ଦେଖି ଭୀମ ଆଗ ହେଲେ[1] । ବେନି ଗଦାବର କରେ ଧଇଲେ[2] ଯେ
କୋପଭରେ ବୁଲାଇଲେ[3], ସେ ବୀର ହେ ॥୮୭॥
ରାଧିକା ପ୍ରାଣ ବଲ୍ଲଭ । ତାଙ୍କ ପଦ୍ମପାଦ ଯୁଗ[4] ଦୁର୍ଲ୍ଲଭ ହେ
ଜଗନ୍ନାଥ କଲେ ଲୋଭ, ଚିତ୍ତରେ ଯେ ॥୮୮॥

## ଦ୍ୱାଦଶ ଛାନ୍ଦ

ରାଗ—ଘାଣ୍ଟାଡ଼ିଆ କେଦାର

ଏମନ୍ତେ ବୁଝି ସେ ଭୀମସେନ  ବେନି ଗଦାକୁ ଘେନି[5] ବହନ
ବୁଲାଇ ଗନ୍ଧର୍ବଙ୍କ[6] ଉପରେ ନେଇ ପିଟିଲେ ହେ
ପଡ଼ିଲେ ପାଞ୍ଚ ସାତ ଯେ ବୀର  ବେଢ଼ିଣ ଦେବେ[7] କଲେ ସମର
ଧରିକେ ଗଦାବର ପ୍ରହାର ଭୀମକୁ କଲେ[8] ଯେ
ଭୀମ ଅଙ୍ଗେ[9] ପଡ଼ି ସହସ୍ର ମାନ ଯେ
ପାଷାଣେ ଢେଳା ପରି[10] ହୁଅନ୍ତି ଚୂର୍ଣ୍ଣ ଯେ
ପୁଣ ମିଶିଣ ସେ ବୃକୋଦର  ଗଦାକୁ ବୁଲାଇ କରେ[11] ପ୍ରହାର
ବହୁତ ଭଙ୍ଗ ରଣେ ପଡ଼ିଲେ[12] ଗନ୍ଧର୍ବ ସୈନ୍ୟ ଯେ ॥୧॥

---

୧ । ଖ. ହୋଇ
୨ । ଖ. ବୁଲାଇ
୩ । ଖ. ଚଳେଇ
୪ । ଖ ଗ ଘ. ପାଦାମ୍ବୁଜ ଦେବ
୫ । ଖ, ଭୁଲାଇଣ
ଗ. ଗଦା ଭୁଲାଇଣ
ଘ. ଗଦା ଭୁଲାଇ
୬ । ଖ ଗ ଘ. ଗନ୍ଧର୍ବ ମାନଙ୍କରେ
୭ । ଖ. ପୁଣ
ଗ. କଲେ ଘୋର
ଘ. ପୁଣ ବେଢ଼ୀଣ
୮ । ଖ ଗ ଘ. କେ ଶର ମାରେ କେ ଗଦାବର ପ୍ରହାର କଲେ ହେ
ଗ. ସର
୯ । ଖ ଗ ଘ. ଅଙ୍ଗରେ
୧୦ । ଖ ଘ. ଢେଲପ୍ରାଏ
ଗ. ଢେଲ ମାଣ
୧୧ । ଖ ଘ. ଗଦା ବୁଲାଇ କଲେ
ଗ. ଗଦା ବୁଲାଇ କରେ
୧୨ । ଖ ଘ. ପଡ଼ିଲେ ହାଦେ

ଦୃଷ୍ଟନ୍ତେ ସୈନ୍ୟ[1] ସେ ଭୀମସେନ  କନ୍ଧେ ବସାଇ ଧର୍ମନନ୍ଦନ
ଗିରି ଶିଖରୁ ତଳକୁ ବେଗେ ଡେଇଁ ପଡ଼ିଲେ[2] ହେ
ପୁଣ ବେଢ଼ିଲେ[3] ଗନ୍ଧର୍ବ ବୀର  ଧର୍ମସୁତଙ୍କୁ[4] ଛାଡ଼ି ଭୂମିର
କୋପରେ ଭୀମ ଗଦା ବୁଲାଇ ଧାଇଁ ମାଇଲେ[5] ହେ
ଏକ ଉପରେ ଆରକକୁ କଷ୍ଟିଡ଼ି ହେ
କୋପଭରେ ଛାଡ଼ନ୍ତି ସେ ସିଂହରଡ଼ି[6] ହେ
ପୁଣି ହିଁ ଗଦା ପ୍ରହାର କଲେ  ବହୁ ଗନ୍ଧର୍ବ ସମରେ ମଲେ
ଦେଖିଣ ସୈନ୍ୟ ମହାଭୟରେ ପଳାନ୍ତି ଛାଡ଼ି ହେ ॥୨॥
ଲ୍ବଛ୍ବଂ ସୁଧର୍ଷ୍ଟି ଦେବ ବଦନ  କହନ୍ତି ଭୀମସେନ ବଚନ[7]
ମୋତେ ଯେ ସଙ୍ଗେ ଆଣୁ ନଥିଲ କଳଆଁ ବୋଲି ହେ
ଏହି ପର୍ବତେ ଥାଅ[8] ହେ ପଡ଼ି  ଏବେ ପଳାଅ ଆମ୍ଭଙ୍କୁ ଛାଡ଼ି
କୃଷ୍ଣ ଛାମୁରେ ଜଣାଅ ଭୀମ ରହିଲା ବୋଲି ହେ[10]
ଶୁଣି ସୁଧର୍ଷ୍ଟି ଦେବେ[11] ପଳାଇ ଗଲେ ହେ
ରାମକୃଷ୍ଣ ଛାମୁରେ ଯାଇ[12] ମିଳିଲେ ଯେ
କହିଲେ ପ୍ରାଣ ଘେନି ଅଇଲୁ  ଭୀମକୁ ରଣ ମୁଖରେ ଦେଲୁ
ଆହା ମୋ ଭୀମସେନ ବୋଲିଣ ରୋଦନ କଲେ ହେ ॥୩॥

---

୧। ଖ ଘ. ଥାଠ
୨। ଖ ଘ. ପଡ଼ନ୍ତେ ଡେଇଁ ହେ
ଗ. ପଡ଼ିଲେ ଡେଇଁ
୩। କ ଖ. ବେଢିଲେ
୪। ଖ ଗ ଘ. ନନ୍ଦନ
୫। ଖ ଗ ଘ. କୋପେଣ
ଭିମସେନ ମାଇଲେ ଗଦା ବୁଲାଇ ହେ
୬। ଗ. ସିଂହରଡ଼ୀ
୭। ଗ. କହିଆ
ଘ. କଳହା
୮। ଖ. ରହନ୍ତି
ଗ ଛ. ଥାଅନ୍ତି
୯। ଖ ଘ. ଶ୍ରୀକୃଷ୍ଣ ଛାମୁରେଣ ଜଣାଅ
ମୁହିଁ ରହିଲା ହେ
ଗ. ଶ୍ରୀକୃଷ୍ଣ ଛାମୁରେଣ ଜଣାଅ ରହିଲ
ବୋଲି ହେ
୧୦। ଖ ବେଗେ
୧୧। ଖ ଗ. ରାମକୃଷ୍ଣଙ୍କ
ଘ. ରାମ ଶ୍ରୀକୃଷ୍ଣଙ୍କର
୧୨। ଖ 'ଜାଇ' ପାଠ ନାହିଁ
ଗ ଚରଣଧରେ
ଘ. ପାଦେ

ଏଣେ ସମରେ ପବନସୁତ      ବହୁତ ସନ୍ୟ କରଣ ହତ[1]
ଇନ୍ଦ୍ର ଛାମୁରେ ଗଦା ବୁଲାଇ ଯାଇ ମିଳିଲେ ହେ
ପିଟନ୍ତେ ଗଦା ଇନ୍ଦ୍ର ଉପରେ      ଗଜ ଛନ୍ଦିଲା ଥୋଡ଼[2] ହସ୍ତରେ
ଫିଙ୍ଗି ଦିଅନ୍ତେ ଶତେ[3] ଯୋଜନେ ଯାଇ ପଡ଼ିଲେ ସେ
ଧୃଷ୍ଟି ଦେବଙ୍କର ଦେଖି ବିକଳ ହେ[4]
କୋପ କରିଣ ଧାଇଁଲେ କାମପାଳ ହେ
ନନ୍ଦିଘୋଷରେ ବସି ଅର୍ଜୁନ      ଦାରୁକ ବାହୁଅଛି ସେ ଯାନ
ଶ୍ରୀକୃଷ୍ଣ ଆଦି ରଣେ ଧାଇଁଲେ ସକଳ ବଳ ହେ[5] ||୪||
ଗିରି ଶିଖରୁ ବେଗେ ଉତ୍ତରି[6]      ସକଳ ଦେବେ ରଣେ ଆବୋରି[7]
ଭୀମସେନ[8] ରଣେ[9] ଅଚେତ ହୋଇ ପଡ଼ିଣ ଥିଲେ ହେ
ଉଠିଲେ ପୁଣି ସଚେତ ହୋଇ[10]      ଶତଶୃଙ୍ଗକୁ ମନରେ ଧ୍ୟାୟି[11]
ବିଶ୍ୱରୂପରେ[12] ଗଦା ବୁଲାଇ ପୁଣି ଧାଇଁଲେ ହେ
ଯମଗଣେ ସେ ପଥ ଓଗାଳି ତାଙ୍କୁ ସେ[13]
ଗଦା ପରଶୁ ପ୍ରହାର କରି ଅଙ୍ଗକୁ ହେ[14]
ବଜ୍ର ଅଟଇ[15] ଯାହା ଶରୀର      ସହସ୍ର ପଡ଼ ହୁଅଇ[16] ଚୂର
ଗଦା ପ୍ରହାରରେ ଭୀମ ମାଇଲେ ଯମଗଣକୁ ହେ ||୫||

---

୧ । ଗ. କଲେ ନିପାତ
୨ । ଖ ଗ ଘ ଥୋର
୩ । ଖ ଗ ଘ. ଯାତ
୪ । ଗ. ଧୃଷ୍ଟି ଦେବେ ଦେଖି ହେଲେ ଆକୁଳ ହେ
୫ । ଖ ଘ. ଶ୍ରୀକୃଷ୍ଣ ସରେଣ୍ଟରେ ଏମନ୍ତ ସକଳ ସନ୍ୟ ହେ
୬ । ଗ. ଉତ୍ତରି
ଘ. ଉତ୍ତରି ଭରି
୭ । ଖ ଘ. ସମର କରି
୮ । ଗ. ଭୀମ ସେ
୯ । ଘ. ଯେ
୧୦ । ଖ ଗ ଘ. ପୁଣ ସେ ସେଚୀ କଣ୍ଠ
୧୧ । ଖ ଘ. ମନେ ସ୍ମରି
ଗ ପଡଶାହିକୁ ମନେ ସ୍ମରି
୧୨ । ଗ. ବିଶ୍ୱରୂପରେ
୧୩ । ଖ. ଦେଖି ଓଗାଳିଲେ ତାହାଙ୍କୁ ହେ
ଘ. ଦେଖିଣ ଓଗାଳି ତାଙ୍କୁ
୧୪ । ଖ. ପ୍ରହାରିଲେ ଦେହକୁ ହେ
ଗ. ପ୍ରହାର କଲେ ତାଙ୍କୁ ନେ
ଘ. ପ୍ରହାରନ୍ତି ଦେହକୁ
୧୫ । ଖ ଘ. ଭୀମ
୧୬ । ଗ. ହୋଇଲେ

କୋପେଣ ଭୀମ ବଳବନ୍ତ ରଡ଼ି  ଯମଗଣଙ୍କୁ ଧର କଚ୍ଛଡ଼

ମୃତ୍ୟୁ ଦେବତା ଦେଖି ମନ୍ତ୍ରେ[1] ଚଳି ଓଗାଳ ଯେ

ଦେଖିଣ ଭୀମ କର ଗର୍ଜନ  ଶିରେ ପିଟନ୍ତେ ଗଦା ବହନ

ମୃତ୍ୟୁ ଦେବତା ଅଜ୍ଞାନ ହୋଇ ପଡ଼ିଲା ତଳ ଯେ

ଯମ ହୃଦରେ ଗଦା[2] ପ୍ରହାର କଲେ ଯେ

ପ୍ରାଣ ହାର ଶମନ ତଳ ପଡ଼ିଲେ ଯେ

ତାଙ୍କର[3] କାଳଦଣ୍ଡ ଛଡ଼ାଇ  ଗର୍ଜିଲେ ଦେବଗଣ ବଢ଼ାଇ[4]

ସେହି ଦଣ୍ଡରେ ଦେବଗଣଙ୍କୁ କ୍ରୋଧେ[5] ମାଇଲେ ଯେ

ଯମକୁ ଯେନ ମନ୍ତ୍ରିଷି ଯାଏ  ମୃତ୍ୟୁ ଉଠିଣ ବେଗେ ପଳାଏ[6]

ବରୁଣ ସହି ନ ପାରିଲ ସେ ଅର୍ଜୁନ ଶରେ[7] ଯେ

ବନ୍ଧୁତ ସନ୍ୟ ମଲେ ତାହାର  ମୋହେଣ ପଡ଼ିଥିଲେ[8] ଭୂମିର

ଚେତନା ପାଇ ଉଠି ପଳାଇ ଗଲେ[9] ସତ୍ୱର ଯେ

ଚନ୍ଦ୍ର ସୂର୍ଯ୍ୟ ଏ ବେଣି[10] ଗଗନେ ..ଲେ ଯେ

ଶାମ ପ୍ରଦ୍ୟୁମ୍ନ[11] ଶରେ[12] ଆକୁଳ ହେଲେ ଯେ

ଶ୍ରୀକୃଷ୍ଣ ଶର ଘାତେ କୁବେର  ସମର ଛାଡ଼ି ହେଲେ ଅନ୍ତର

ଯକ୍ଷଗଣଙ୍କୁ[13] ଯାଦବେ ବେଢ଼ି କରି ମାଇଲେ ଯେ ॥୭॥

---

୧ । ଖ. ଦେଖିଣ ଶବ
　ଗ. ସବ
　ଘ. ମୃତ୍ୟୁ ଦେବତା ଦେଖିଣ ସଦ
୨ । ଗ. ବହନ (ଅଧିକ)
୩ । ଖ ଗ ଘ. ତା କରୁ
୪ । ଖ ଗ ଘ. ସେ ଭୀମସେନ ସେହିଣ ଜାଣ
୫ । ଖ ଗ ଘ. ଶହସ୍ର ଧରିଣ ଦେବ ସନ୍ୟ
୬ । ଖ ଗ. ମୃତ୍ୟୁକୁ ସେହି ଶବ ପଳାଏ
　ଘ. ମୃତ୍ୟୁକୁ ସେହି ସବ ପଳାଏ
୭ । ଗ ଘ. ସର
୮ । ଘ. ପଡ଼ିଥିଲେ
୯ । ଗ ଘ. ପାଧ୍ୱଂ ପଳାଇ ତତ୍କ୍ଷଣ ଗଲେ
୧୦ । ଘ. 'ବେଣି' ପାଠ ନାହିଁ
୧୧ । ଖ. ପଦ୍ମ ନ
　ଘ. ସ୍ୱାମ ପଦ୍ମନ
୧୨ । ଗ ଘ. ସରେ
୧୩ । ଖ. ଯମଗଣଙ୍କୁ

କ୍ରୋଧ କରିଣ ସେ କାମପାଳ — କରେ[1] ବୁଲଇ ହଳ ମୁଷଳ
ଯକ୍ଷ କଳ୍ପର ଗଛଙ୍କ ବନ ଧରି[2] ମାରନ୍ତି ଯେ
ତ୍ରିଦଶେ ଦେଖି ଭଏ ଭାଜିଲେ[3] — ବଡ଼ୋଜାଠାରେ ଶରଣ ଗଲେ
ସନ୍ୟ ମରିବା ଦେଖିଣ ଇନ୍ଦ୍ର କୋପ କରନ୍ତି ଯେ
ଘୋର ମେଘକୁ ଡକାଇଲେ ଆସି[4] ହେ
ବୋଇଲେ ପ୍ରଳୟ କାଳ ପରି[5] ବରଷ ହେ
ପୁଣି ପବନ ପାଶେ ଡକାଇ[6] — ବୋଇଲେ ଯାଅ ବହନ କରି
ଅତି ପ୍ରଖର କରିଣ[7] ବହିବ ଅଣଚାଶ ହେ ॥୮॥
ସୈନ୍ୟ ସକଳ ବହି[8] ଉଡ଼ାଇ — ସିନ୍ଧୁ ମଧ୍ୟରେ ଦିଅ ବୁଡ଼ାଇ[9]
କେମନ୍ତ କରି ରକ୍ଷା କରିବ ଏ ଦାମୋଦର ହେ
ଅଇରାବତ କନ୍ଧରେ[10] ଥାଇ — ବଜ୍ର ମାରିବ ଭୁଜାଇ ମୁଣ୍ଡେଂ[11]
କେ ଆଜ ତାଙ୍କୁ ରକ୍ଷା କରିବ ପୃଥ୍ୱୀ ଉଦରେ[12] ହେ
ଶୁଣିଣ ମେଘମାନେ କରି[13] ଗର୍ଜ୍ଜନ ହେ
ଜଳ ବେଢ଼ିଣ ସେ ଘୋଟିଲେ ଗଗନ ହେ[14]
ଅଠର ପଦ୍ମ ସଇନ୍ୟ[15] ଭୁଲେ — ସେ ଘୋର ମେଘ ଶୂନ୍ୟେ ମିଶିଲେ[16]
ଧରିଣ ଅଣଚାଶ ମୂରତି[17] ବହେ ପବନ ହେ ॥୯॥

---

୧ । ଖ ଘ. କୋପେ
୨ । ଙ ଗ ଘ. ବଡ଼ୀଧରି
୩ । ଖ ଗ ଘ. ଦେଖିଣ ଭୟ କଲେ
୪ । ଖ. ପାସ
  ଗ. ଡାକାର ଆଣି ପାସ
  ଘ. ଡାକେ ଡକାଇ ପାସ
୫ । ଖ ଗ ଘ. ପ୍ରାଏ
୬ । ଖ ଗ ଘ. ଡକାଇ
୭ । ଖ ଘ. ହୋଇଣ
୮ । ଘ. କରି
୯ । ଗ. ଚକାଡ଼
୧୦ । ଗ ଘ. ଅଇରାବତ କନ୍ଧରେ ଥାଇ
୧୧ । ଗ ଘ. ବଜ୍ରମ୍ ମାରିବଇ ଭୁଜାଇଂ
୧୨ । ଘ. ମଧ୍ୟରେ
୧୩ । ଗ ପୁଣି ମେଘମାନେ କରନ୍ତି
  ଘ. ଘନମାନେ କରିଣ
୧୪ । ଖ. ବାସବ ଆଜ୍ଞା ପାଇଣ ମେଘେ — ଆକାଶ ମାର୍ଗେ ଘୋଟିଲେ ବେଗେ
  ଗର୍ଜ୍ଜନ ନାଦ କରିଣ ଯେହ୍ନେ ପୁଣ ରହିଲେ ହେ
  ଅଠର ପଦ୍ମ ସଇନ ଭୁଲେ — ପବନ ସଙ୍ଗେ ମେଳ ହୋଇଲେ
  ପ୍ରଳୟ କାଳ ପରାଏ ଯେହ୍ନେ ହେଲା ପରତେ ହେ
  ଜଳ ବେଢ଼ିଣ ସେ ଘୋଟିଲେ ଗଗନ କେ
  ଦେଖି ଅସ୍ଥିର ହେଲେ ସକଳ ଜନ ଯେ (ଅଧିକ ପାଠ)
  ଗ. ଘୋଟିଲେକ ବହନ
  ଘ. ଘୋଟିଲେକ ଗଗନ
୧୫ । ଙ. ସଇନ
  ଘ. ସହିତ
୧୬ । ଖ. ମିଳିଲେ
  ଗ. ପୁଣ ମିଶିଲେ
  ଘ. ଯାଇ ମିଳିଲେ
୧୭ । ଖ ଗ ଘ. ଏକ ହୋଇଣ ସେ ଅଣଚାଶ

ଏମନ୍ତ ଦେଖି ନନ୍ଦ ନନ୍ଦନ          ସ୍ମରିଲେ ଶୀଘ୍ରେ ସେ ହନୁମାନ
କିଷ୍କିନ୍ଧାବନେ[1] ଥାଇ ମାରୁତି ତାହା ଜାଣିଲେ ହେ
ଗମନ କରି ଶୂନ୍ୟ ମାର୍ଗରେ          ମିଳିଲେ ତହିଁ[3] ଅନ୍ତଃ ସଭାରେ
ଶ୍ରୀକୃଷ୍ଣ ପାଦ ତଳରେ ଯାଇ[2] ପ୍ରଣମ କଲେ ସେ
କେଶବ କୋଳ କରି ତାଙ୍କୁ କହନ୍ତି ହେ
ଦେଖ ପବନ ଅଣଶ୍ୱାସ ବହନ୍ତି ହେ
ମୋ ସବୁ ସୈନ୍ୟ ଉଡ଼ାଇ ନେବେ          ସିନ୍ଧୁ ମଧ୍ୟରେ ବୁଡ଼ାଇ ଦେବେ
ଝଟିନ୍ତେ ମୋର ସୈନ୍ୟ ରକ୍ଷଣ କର ମାରୁତି ହେ ॥୧୦॥

ଶୁଣିଣ ହନୁ ପୁଚ୍ଛ ବିସ୍ତାରି          ଶ୍ରୀକୃଷ୍ଣଙ୍କ ସୈନ୍ୟ ଦେଲେ ସେ ଘେରି
ପୁଚ୍ଛରେ ତାନେ ବେଢ଼ ତାଳ ସେ ଅଟଇ ଉଚ୍ଚେ ହେ[4]
ଗଣ୍ଡି ମାଡ଼ଣ[5] ବସିଲେ ହନୁ          ଦେଖି ଗରୁଡ଼ ବିସ୍ତାରି ତନୁ
ଉପରେ ବେଢ଼ ପକ୍ଷି ଯୋଡ଼ାନ୍ତି ଅତ୍ୟନ୍ତ ଯତ୍ନେ ସେ
ତହିଁ ତଳରେ ସର୍ବେ ସୁଖେ ରହିଲେ ସେ
ବାତ ବରଷା କିଛି ନ ଜାଣିଲେ ସେ
ଏମନ୍ତେ ଦେଖି କଣ୍ଟ[6] ଅର୍ଜ୍ଜୁନ          ମନ ଭେଦ ସେ ପେଷି ବହନ
ତାନେ ବହନେ ଉପରେ ଶର ପୀଡ଼ାପେ[7] କଲେ ସେ ॥୧୧॥
ବାସବ ପେଷନ୍ତେ ବଜ୍ର ଶର          ମନ ଭେଦରେ ହୁଅନ୍ତି ଚୂର
ଗର୍ଜନ କରି ଘୋର ବରଷା କରନ୍ତି ଘନ ହେ

---

୧ । ଖ ଘ. କିଷ୍କିନ୍ଧା ବନେ
ଗ. କିଷ୍କିନ୍ଧା ବନେ
୨ । ଖ. ପାଦପଦ୍ମ ତଳରେ
ଗ ଘ. ପଦ୍ମପାଦ ତଳରେ
୩ । ଖ ଘ. ଦ୍ୱାରକା
୪ । ଖ ଗ ଘ. ପର୍ବ ପ୍ରଷ୍ଠରେ ବେଢ଼ ତାଳରେ
ଅଟଇ ଉଚ୍ଚ ହେ
୫ । ଖ ଗ ଘ. ଗଣ୍ଡି ପାଞ୍ଚଣ
୬ । ଖ ବୀର
ଗ. ଦେଖିକରି
ଘ. ଏମନ୍ତେ ଦେଖିକରି
୭ । ଖ. ସବୁ ପିଡ଼ାପେ
ଘ. ସବୁ ପିଡ଼ାଏ
୮ । ଖ ଘ. ପଡ଼ୀଣ

ଶର[1] ଗୁଣ୍ଠି ଉପରେ ପଡ଼ି    ଭେଦ ନ ପାରେ ପଡ଼େ ଉପୁଡ଼ି[2]
ପ୍ରଖରେ ବଜ୍ର ପଣି ନ ପାରି ଘୋର[3] ପବନ ଯେ
ଆରତ ଭଞ୍ଜନ କୃପା ସାଗର ହେ
ଏମନ୍ତ ଚିନ୍ତିଂ କଲେ ଶ୍ରୀ ଦାମୋଦର ଯେ[4]
ନିସ୍ତନେ[5] ଚିନ୍ତିଂ ସର୍ବେ ରହିଲେ    ଦେଖି ବାସବ ବିରସ ହେଲେ
ପବନ ବଜ୍ର ଘୋର ବରଷା ହେଲେକ ଥିର[6] ହେ ॥୧୨॥
ପବନ ମୂର୍ତ୍ତି[7] ହନୁ ଦେଖିଲେ    ଭୁଜଦଣ୍ଡେ ନେଇ ପ୍ରହାର କଲେ
ମୋହ ହୋଇଣ ପବନ ଧରଣୀରେ ଶୋଇଲେ[8] ହେ
ମେଘ ଦେଖିଣ ଗଲେ ପଳାଇ    ଚିହ୍ନିଂ ଆକାଶ ନିର୍ମଳ ହୋଇ
ଅର୍ଜ୍ଜୁନ ମନଭେଦ ଶରକୁ[9] ସଂଗ୍ରହ କଲେ ଯେ
ଗରୁଡ଼ ଦେଖି ପକ୍ଷି ସଂହାରିଲେ ଯେ[10]
ହନୁ ଲାଙ୍ଗୁଳ ବାହାର କରି ନେଲେ[11] ଯେ
ଦେଖିଣ ସର୍ବ ଯାଦବ ବୀର    ପ୍ରତିଜ୍ଞା[12] କରି ହେଲେ ବାହାର
ଯେ ଯାହା କରେ ନିଜ ଆୟୁଧ ଧରି ଧାଇଂଲେ[13] ହେ ॥୧୩॥
ଶିବଗଣକୁ ଯାଇ ଭେଟିଲେ    ବିବିଧ ଶର[14] ପ୍ରହାର କଲେ
ହଳ ମୁଷଳ ଧରିଣ ରାମ ଧାଇଁଲେ କୋପେ ସେ

---

୧ । ଗ. ସର
୨ । ଖ ଘ. ନ ପାରି ପଡ଼େ ନିଗିଡ଼ୀ
୩ । ଖ ଘ. ପଶିଣ ନ ପାରନ୍ତେ
ଗ. ପଶି ନ ପାରନ୍ତେ
୪ । ଖ ଗ ଘ. ବଳଭଦ୍ରର ଯେ
୫ । ଖ ଗ ଘ, ନିଶ୍ଚିନ୍ତେ
୬ । ଖ ଘ. ପବନ ଘନ ବଜ୍ର ବରଷି ହେଲେକ ସ୍ଥିର ହେ
ଗ. ପବନ ବଜ୍ର ଘନ ବରଷି ସ୍ଥିର ହୋଇଲେ ଜେ
୭ । କ. ଖ ଘ. ମୂର୍ତ୍ତ
୮ । ଗ, ପଶିଲେ ହେ
୯ । ଗ ଖ. ଶରକୁ
୧୦ । ଖ ଗ ଘ. ନିଜ ପକ୍ଷି ସଂହରି ହେ
୧୧ । ଖ ଘ. ଲାଙ୍ଗୁଡ଼ ନେଲେ ବାହାର କରି ହେ
ଗ. ଲାଙ୍ଗୁଳ ବାହାର କରି
୧୨ । ଘ. ପ୍ରତିଜ୍ଞାଂ
୧୩ । ଖ ଗ ଘ. ଅସ୍ତ୍ର ଧରି ହେ
୧୪ । ଖ. ସର

ନନ୍ଦୀଙ୍କ ଗ୍ରାମସେନ ଜିଣିଲେ ଗଣେଶ ତାଙ୍କୁ ଉଗାଳ ଥିଲେ
ଗ୍ରାମ ପ୍ରବେଶ ହୋଇଲେ ଯାଇ ପ୍ରଳମ୍ବ ରୂପେ[1] ହେ
ମୂଷକ ବୁଲାଇଣ ବେଗେସେ[2] ପିଟିଲେ ସେ
ଗଣେଶ ଜ୍ଞାନ ହାରି[3] ତଳେ ଲେଟିଲେ ସେ
ମହାକାଳଙ୍କୁ ପ୍ରଦ୍ୟୁମ୍ନ[4] ବୀର ଜିଣିଲେ କରି ଘୋର ସମର[5]
ଯାଦବେ ଶିବଗଣଙ୍କୁ ମାରି[6] ବିନାଶ କଲେ ହେ[7] ॥୧୪॥
ସେ ହେମବନ୍ତ ଗିରି ପାଶରେ[8] ହନୁ ମିଳିଲେ ଅତି ରୋଷରେ[9]
ସକଳ ଗିରି ଉଠି[10] ହନୁଙ୍କୁ ବସନ୍ତେ ମାଡ଼ି ହେ
ବଜ୍ର ଅଟଇ ହନୁ ଶରୀର ସକଳେ ଚୂର୍ଣ୍ଣ ହୋଇଲେ ଚୂର
ଯେତେକ ଗିରି ଆସିଣ ହନୁ ଉପରେ ପଡ଼ି ସେ[11]
ହେମବନ୍ତ ଆସି[12] ପାଶେ ମିଳିଲେ ସେ
ଦେଖି ହନୁ ଚପଡ଼େ ପ୍ରହାର କଲେ ସେ
ମୋହେ ପଡ଼ିଲେ ଗିରି ରାଜନ ବୃଥା ପ୍ରହାରନ୍ତେ[13] ହନୁମାନ
ପାର୍ବତୀ ଦେଖି ହନୁମନ୍ତଙ୍କୁ[14] କର ଧଇଲେ[15] ହେ ॥୧୫॥
ମୋହୋ ପିତାଙ୍କୁ[16] ଜୀବନ ଦାନ ଦିଅ ହେ ପ୍ରଭଞ୍ଜନା[17] ନନ୍ଦନ
ଶୁଣିଣ ହନୁ ତୋଷ ହୋଇଣ ଛାଡ଼ିଲେ ତାଙ୍କୁ ହେ

---

୧ । ଖ ଘ. ଅତ୍ୟନ୍ତ ତାପେ
ଗ. ଅତ୍ୟନ୍ତ କୋପେ
୨ । ଖ ଗ ଘ. ବେଗେ
୩ । ଘ. ଜ୍ଞାନ ତେଜି
୪ । ଖ ଘ. ପଦ୍ମନ
୫ । ଗ. ମହାସମର
୬ । ଗ. ବେଢି
୭ । ଖ ଘ. ବେଢ଼ିକରି ମାରିଲେ ହେ
୮ । ଖ. ହେମବନ୍ତର ଗିରି କୂଳରେ
ଗ ଘ. ଗିରି କୂଳରେ
୯ । ଖ ଗ ଘ. ତାଙ୍କ ପାଶରେ
୧୦ । ଖ ଘ. ଦେଖି
୧୧ । ଖ. ତାଙ୍କ ଶିରେ ପଡିଲେ ହେ
ଗ. ଅଙ୍ଗରେ ପଡ଼ି କେ
ଘ. ତାଙ୍କ ଅଙ୍ଗରେ ପଡ଼ିଲେ
୧୨ । ଖ ଘ. ହେମବନ୍ତ ଆସି
ଗ. ଆସିଣ
୧୩ । ଖ. ବୃଥାଏ ମାରନ୍ତେ ସେ
ଗ. ବୃଥାଏ ମାରନ୍ତେ
ଘ. ବୃଥାଏ ମାରନ୍ତ
୧୪ । ଖ. ପାର୍ବତୀଙ୍କର
ଗ. ହନୁମନ୍ତର
ଘ. ପାର୍ବତୀ ଦେଖି ହେନ
୧୫ । ଗ. ଧଇଲେ କର ଯେ
୧୬ । ଖ ଗ. ମୋହର ପିତାଙ୍କୁ ପ୍ରାଣଦାନ
ଘ. ମୋର ପିତାଙ୍କୁ ପ୍ରାଣଦାନ
୧୭ । ଖ. ଅଞ୍ଜନାଙ୍କ
ଗ. ପବନର
ଘ. ଅଞ୍ଜନାର

ଅତ୍ୟନ୍ତ କୋପେ ପବନ ସୁତ ସେଠାରୁ ଚଳଗଲେ ଭରତ[1]
ପ୍ରହାର ନାଡ[2] ନାଶ କରନ୍ତି ଶିବଗଣଙ୍କୁ ଯେ

ଶ୍ରୀକୃଷ୍ଣ ପାଶେ ପରବେଶ ଶଙ୍କର ଯେ
ଧନୁ ଧର କରନ୍ତି ଘୋର ସମର[3] ଯେ

ଦେଖି ନାରଦ ତୋଷ ହୁଅନ୍ତି ଲାଗୁ ବୋଲିଣ ଉଠେ ଭ୍ରାନ୍ତି
ବୀଣା ବଜାଇ ନୃତ୍ୟ କରନ୍ତି ସେ ତପୀବର ହେ ॥୧୬॥

ବାସବ ଚଢ଼ି ଐରାବତ ଯାଦବ ବଳ କରନ୍ତି ହତ
ଦେଖି ଅର୍ଜ୍ଜୁନ ଧନୁ ଧରଣ ତାଙ୍କୁ ଓଗାଳ ଯେ[4]

ଦେଖି ଶତକ୍ରତୁ[5] ପେଷିଲେ ଶର ଦୁରୁ ଛେଦିଲେ ଅର୍ଜ୍ଜୁନ ବୀର
କେତେବେଳେ ସେ ଅର୍ଜ୍ଜୁନ ଶର[6] ଛେଦନ୍ତି ମିଳ ଯେ[7]

ଦେବଶରରେ[8] ବେଢ଼ କଲେ ସମର ହେ
ସ୍ୱର୍ଗ ଭୁବନ ଦିଶିଲା ଅନ୍ଧକାର ହେ[9]

କରନ୍ତି ବେଢ଼[10] ଅସଂଖ୍ୟ ରଣ ଅପୂର୍ବ ଦେବଶର[11] ପେଷିଣ
କ୍ରୋଧେ ଈଶ୍ୱର ଧଇଲେ ପଶୁପତକୁ କର ଯେ[12] ॥୧୭॥[13]

---

୧ । ଖ ଗ ଘ. ଭ୍ରମନ୍ତ
୨ । ଖ ଗ ଘ. ପ୍ରହାର କର
୩ । ଗ ଘ. ମହାସମର
୪ । ଖ ଘ ଦେଖି ତାହାଙ୍କୁ ଆଗେ ଓଗାଳ
ଅର୍ଜ୍ଜୁନ ବୀର ହେ
୫ । ଗ ବାସବ ଦେଖି
୬ । ଗ କେତେବେଳରେ ଅର୍ଜ୍ଜୁନ ସର
୭ । ଖ ବାସବ ଶତେ ଶର ପେଷିଣ ଅର୍ଜ୍ଜୁନ
ଏକ ଶରେ ଛେଦ ଯେ
ପଞ୍ଚନାରାଚ ପେଷିଲେ ଗୁଣ ଛେଦନ୍ତି
ସୁନାସୀର ହେ
ଘ. ବାସବ ସତେ ସର ପେଷିଣ ଅର୍ଜ୍ଜୁନ
ଏକ ସରେ ଛେଦଣ
ସାଅ ନାରାଚ ପେଷିଲେ ଛେଦନ୍ତି ସୁନା
ସୀର
୮ । ଖ. ଦେବଶରରେ

୯ । ଖ ଗ ଘ. ଅର୍ଜ୍ଜୁନ ମନଭେଦ ପେଷିଲେ
ବାସବ ଅଙ୍ଗେ ଭେଦ ବୋଇଲେ
ଶର ଜାଳରେ ମୋହେ ପଡ଼ିଲେ
ସେ ପୁରନ୍ଦର ହେ
ଅର୍ଜ୍ଜୁନ ତହୁଂ ଗଲେକ ଚଳି
ଦେଖିଲେ ଯୁଦ୍ଧ କରନ୍ତି ଶୂଳୀ
କୃଷ୍ଣଙ୍କୁ ପଛ କରିଣ ବୀର
କଲେ ସମର (ଅଧିକ ପାଠ)
୧୦ । ଖ ହୋଇଲା ତହିଁ
ଘ. କରନ୍ତେ ତହୁଂ
୧୧ । ଖ. ଦେବଶର
୧୨ । ଖ ଘ. ପସୁପତ ଶ୍ରୀକର ହେ
୧୩ । ଖ ଗ ଘ.
ଦେଖି ଅର୍ଜ୍ଜୁନ ଧନୁଃକୋଣ ଧଇଲେ ହେ
ଶଙ୍କର ଧନୁଃକୋଣ ମନେ ଚିନ୍ତିଲେ ହେ

ଈଶ୍ୱର ଠାରୁ ସେ ଧନୁ ନେଇଣ ପ୍ରବେଶ ଅର୍ଜ୍ଜୁନର କରେଣ
ବେଢ଼ ଜଙ୍ଘରେ କର ଦେଇଣ ରହିଲେ ହର[୧] ସେ

ଶ୍ରୀକୃଷ୍ଣ ବୋଲନ୍ତି ହେ ଅର୍ଜ୍ଜୁନ ଶିବର ଶିର ଛେଦ ବହନ
କଳ ଲଗାଇ ଆରମ୍ଭ[୨] ଏହୁ କଲ ସମର ହେ
ଏ ମୋହୋ ବଚନ କରିବା ବୀର ହେ
କିଞ୍ଚିତ ଦୋଷ ନାହିଁ ସୁରନାଥର ସେ[୩]

ଅର୍ଜ୍ଜୁନ ବୋଲେ ଛାଡ଼ିଲେ ଶର[୪] କାକୁତ୍ସ୍ଥେ ଉଗ୍ର ହୋଇଲେ ହର
ବହୁତ ଦୋଷ ମୋର ହୋଇବ ଯେବେ ପେଷିବ ଶର[୫] ହେ ॥୮॥

ଶ୍ରୀକୃଷ୍ଣ ଚନ୍ଦ୍ର ବଚନ ଶୁଣି ପଦ୍ମ ଚରଣେ ନବେଶି ପାଣି
ଶନପ୍ରଭର ହୋଇ କହନ୍ତି ବୀର ଅର୍ଜ୍ଜୁନ ସେ

ସମରେ ପଶି ରଣେ ହାରିବ ଭସ୍ମରେ ପିଠି ଦେଇ ଭାଜିବ
ତାହାକୁ ମୃତ୍ୟୁଂ ନ କରେ ଦେବ କେବେ ନିଧନ ସେ[୬]
ଶୁଣିଣ କୃଷ୍ଣଚନ୍ଦ୍ର[୭] ହେଲେ ହରଷ ହେ
ବହୁତ ସନ୍ୟ ଦେବେ ହୋଇଲେ ନାଶ ହେ[୮]

ଯେ ଅବା ଥିଲେ ପଳାଇ ଗଲେ ଦେଖିଣ ସ୍ୱର୍ଗ ତୋଷ ହୋଇଲେ
କହନ୍ତି ଏବେ ମୋ ବାଣୀ ଶୁଣିମା ହୃଷୀକେଶ ହେ ॥୯॥

ଯାହା ମୁ ସତ୍ୟ ଅଛଇ ଭଣି[୯] ଯେବେ ଇନ୍ଦ୍ରକୁ ପାରିବ ଜିଣି[୧୦]
ସ୍ୱର୍ଗରେ ନୂଆ ଇନ୍ଦ୍ର କରିବ[୧୧] ନିଷ୍ଟଏ ଆଜ ହେ

---

୧। ଖ ଘ. ହର ରହିଲେ ହେ
ଗ. ଅର୍ଜ୍ଜୁନ କନ୍ଧରେ କର ଦେଇଣ
ହର ରହିଲେ

୨। ଖ. ଆରମ୍ଭ
ଗ. କଲ ଆରମ୍ଭ
ଘ. ଆରମ୍ଭରେ

୩। ଖ ଗ ଘ. ପାଠ ନାହିଁ

୪। ଖ ଗ ଘ. କହେ ଛାଡିଲେ ଶର

୫। ଗ ଘ. ଘର

୬। ଖ ଗ. "ଶ୍ରୀକୃଷ୍ଣ ଚନ୍ଦ୍ର ବଚନ-କେବେ ନିଧନ ସେ" ପାଠ ନାହିଁ

୭। ଖ. ଶ୍ରୀକୃଷ୍ଣ ଚନ୍ଦ୍ର ଶୁଣି
ଗ. ଶୁଣି କୃଷ୍ଣଚନ୍ଦ୍ର
ଘ. ଶୁଣି ଶ୍ରୀକୃଷ୍ଣ ଚନ୍ଦ୍ର

୮। ଖ ଘ. ଦେବସନ୍ୟ ହେଲେ ବିନାଶ
ଗ. ଦେବସନ୍ୟ ହୋଇଲେ ନାଶ

୯। ଖ ଗ ଘ. ଯାହା ସେ ସତ୍ୟ ଅଛୁ ମୁଁ ଭଣି

୧୦। ଖ ଗ ଘ. ମାରି

୧୧। ଖ ଘ. କରିବି

ବନ୍ଧୁର ଧଣ କଲ୍ଲ ଅର୍ଜ୍ଜୁନ    ଘେନଣ ପିବା ଧର୍ମନନ୍ଦନ
ସ୍ୱର୍ଗପୁରରେ କଣବା ଆଜ[1] ନିଦଣ ରାଜ[2] ହେ
ଶ୍ରୀକୃଷ୍ଣ ଶୁଣି[3] ଆନନ୍ଦ ହେଲେ ଯେ
ସମସ୍ତଙ୍କୁ ଘେନ ସ୍ୱର୍ଗକୁ[4] ଗଲେ ଯେ
ବ୍ରହ୍ମାଙ୍କ ସଙ୍ଗେ ସକଳ ସୁର    ଶଙ୍କର ଆଦ୍ୟ ଯକ୍ଷ କନ୍ନର
ସକଳେ ରାମକୃଷ୍ଣ ଚରଣେ ବନ୍ଦନ କଲେ ହେ ॥୨୦॥
ଘେନାଣ ସଙ୍ଗେ ଅନ୍ତ୍ରାବନ୍ତ[5]    ସୁଧର୍ମା ସଭାରେ ଧର୍ମସୁତ
ବସାଇ ବ୍ରହ୍ମା ଆପଣେ ଅଭିଷେକ ସେ କଲେ ଯେ
ଶ୍ରୀକୃଷ୍ଣ କରେ ଘେନଣ[6] ପାଟ    ବାନ୍ଧଲେ ଯୁଧିଷ୍ଠିଙ୍କ ଲଲାଟ
ଦେଖି ଈଶ୍ୱର ଶିରରେ ଛତ୍ର ଟେକ ଧଇଲେ[7] ଯେ
ବୀଣାଧର ନାରଦ ନୃତ୍ୟକୁ କଲେ[8] ଯେ
ଗନ୍ଧର୍ବମାନେ ମଙ୍ଗଳ ଉଚ୍ଚାରିଲେ ଯେ[9]
ବିଦ୍ୟାଧରୀଏ ଗାବନ୍ତି ଗୀତ[10]    ଅପସରୀଏ କରନ୍ତି ନୃତ୍ୟ
ପବନ ପାଶେ ରହି ଚାମର ଧୀରେ ଢାଳନ୍ତି[11] ଯେ ॥୨୧॥
କୁବେର କରନ୍ତି ରତ୍ନ ବୃଷ୍ଟି    ପଢ଼ନ୍ତି ବେଦ ସେ ପରମେଷ୍ଟି
ଆପଣେ ବଳଦେବ କୁସୁମ ବୃଷ୍ଟି କରନ୍ତି[12] ଯେ

---

୧। ଖ. ସୁରପୁରରେ କଣବା ନେଇ
ଗ. "ଆଜ" ପାଠ ନାହିଁ
ଘ. ନେଇ
୨। ଗ. ରାଜନ
୩। ଖ ଗ ଘ. ଶୁଣି କୃଷ୍ଣ ଏମନ୍ତ
୪। ଖ. ଘେନଣ ସ୍ୱର୍ଗକୁ
ଗ. ସମସ୍ତ ଶୁର ଘେନାଣ ସ୍ୱର୍ଗକୁ
ଘ. ସ୍ୱର୍ଗକୁ
୫। ଗ ଘ. ଅନ୍ତ୍ରବ୍ରତ
୬। ଘ. ଧଣଣ
୭। ଖ ଗ. ଛତ୍ର ତାଙ୍କର ସିରେ ଟେକଲେ ହେ
ଘ. ଦେଖି ଈଶ୍ୱର ଛତ୍ର ତାଙ୍କର ଶିରେ ବାନ୍ଧଲେ
୮। ଖ ଗ. ନୃତ୍ୟ କରନ୍ତି ହେ
୯। ଖ ଘ. ଉଚ୍ଚରନ୍ତି ହେ
୧୦। ଖ ଘ. ଗାୟନ
୧୧। ଖ ଗ ଘ. ଢାଳୁ ଅଛନ୍ତି ହେ
୧୨। ଘ. ବର୍ଷୁ ଅଛନ୍ତି

ମୃଦଙ୍ଗ ଜୟ ଜୟ ଶବଦ ଗଣିକା ହୁଳହୁଳି ନିନାଦ[୧]
ଗୁହ୍ୟକ ଗଣ ଦୁନ୍ଦୁଭି ନାଦ କରୁଅଛନ୍ତି ଯେ[୨]
ଏମନ୍ତେ ଅଭିଷେକ ବିଧି[୩] ସାରିଲେ ଯେ
ସକଳ ଦେବେ ଦେଖି ତୋଷ ହୋଇଲେ ଯେ
ଶ୍ରୀକୃଷ୍ଣ ଘେନି ସକଳ ଦେବ ପ୍ରସନ୍ନ କଲେ ଯୁଧିଷ୍ଠି ଦେବ
ଧର୍ମନନ୍ଦନ ସ୍ୱର୍ଗରେ ଇନ୍ଦ୍ରପଦ ବସିଲେ[୪] ଯେ ॥୨୨॥
ଶଚୀ ଅର୍ଜ୍ଜୁନ ଘେନାଇଂ ଗଲେ ପାର୍ଥ ତାହାଙ୍କୁ ଦର୍ଶନ କଲେ
ଶଚୀ କହିଲେ ଶ୍ରୀରାମକୃଷ୍ଣ ହେଲେକ ତୋଷ[୫] ହେ
ପ୍ରମଦ କରି କହି ଶ୍ରୀକୃଷ୍ଣଙ୍କୁ[୬] ଆନନ୍ଦକାଳେ ଆଣି ପିତାଙ୍କୁ
କ୍ଷମା କରାଅ ପ୍ରସନ୍ନ କରାଇଣ ଏ ଦୋଷ[୭] ହେ
ଶୁଣି ଅର୍ଜ୍ଜୁନ ତହୁଂ ସତ୍ୱରେ ଗଲେ ଯେ
ରାମକୃଷ୍ଣଙ୍କ ଛାମୁରେ ଜଣାଇଲେ ଯେ[୮]
ବ୍ରହ୍ମା ସକଳ ଦେବଙ୍କୁ ଘେନି ଗାଆଇଁ ଦୁଇକୁଳ ଓ ସଇନି
ଇନ୍ଦ୍ରଙ୍କୁ ଘେନି ଅର୍ଜ୍ଜୁନ ସଙ୍ଗେ ସ୍ୱର୍ଗେ ମିଳିଲେ[୯] ଯେ ॥୨୩॥

---

୧ । ଖ ଗ. ସବଦ
ଘ. ହୁଳହୁଳିର ନାଦ
୨ । ଗ. ଗୁହ୍ୟକ ଗଣେ ଦୁନ୍ଦୁଭି ବାଦ୍ୟ ନାଦ କରନ୍ତି ହେ
ଘ. ବାଦ୍ୟ କରୁଅଛନ୍ତି
୩ । ଖ ଘ. ଆସି ଅଭିଷେକ
ଗ. ବିଧାନ
୪ । ଖ. ଲଭିଲେ
୫ । ଖ ଗ.ଘ. ସକଳେ ଏବେ ହେଲ ସନ୍ତୋଷ ହେ
ଘ. ହେଲେ ସନ୍ତୋଷ
୬ । ଖ ଗ ଘ. ଜଣାଇ କରି କୃଷ୍ଣଚନ୍ଦ୍ରଙ୍କୁ
୭ । ଖ ଗ ଘ. ରାମଙ୍କୁ କହି କ୍ଷମା କରାଅ ତାହାଙ୍କ ଦୋଷ ହେ
୮ । ଖ ଆଗେ ଯାଇଂ କହିଲେ ହେ
ଗ. ରାମକୃଷ୍ଣଙ୍କର ଆଗରେ କହିଲେ ହେ
ଘ. ରାମ ଶ୍ରୀକୃଷ୍ଣଙ୍କର ଆଗେ
୯ । ଖ. ପୁଣି ସ୍ୱର୍ଗେ ପଶିଲେ ହେ
ଗ ଘ. ପୁଣି ସ୍ୱର୍ଗେ ମିଳିଲେ ଯେ

ସଚଳା[1] କନ୍ୟା ସେନ ଚନ୍ଦ୍ରୌଜା    ଦ୍ରୁସନ କଲେ ଦେବାଧିରାଜା[2]
ବଳରାମଙ୍କୁ ଦ୍ରୁସନ କରି ହୋଇଲେ ଉଭା ସେ[3]
ସଚଳା ପିତା କୋଳେ ବସିଲେ    ଦେଖିଣ ସର୍ବେ ଆଶ୍ଚର୍ଯ୍ୟ[4] ହେଲେ
କେ ଅବା ତତ୍ତ୍ୱଂ ପାରିବ କହି କନ୍ୟାର ଶୋଭା ସେ
କୃଷ୍ଣ ଉଠି ଇନ୍ଦ୍ରଙ୍କୁ କୋଳ କରନ୍ତି ସେ
ଆଦର[5] କରି ତାଙ୍କୁ କୋଳେ[6] ବସାନ୍ତି ସେ
କହନ୍ତି ତତ୍ତ୍ୱଂ ଧର୍ମନନ୍ଦନ    ସଚଳା କନ୍ୟାକୁ ଚିତ୍ରସେନ
ବିବାହ କର ସକଳ ମନ ହୋଇବ ଶାନ୍ତ[7] ହେ ॥୨୪॥
ଶୁଣି ଶ୍ରୀକୃଷ୍ଣ ସେ ପୀତାମ୍ବର    ଆନନ୍ଦେ କଲେ ସେ ସିଦ୍ଧକାର
ଶୁଣି ବାସବ ଅମର ପୁରେ କଲେ ଉଚ୍ଛବ[8] ସେ
ସଚଳା ଚିତ୍ରସେନକୁ ଆଣି    ବିବାହ କଲେ ସାରଙ୍ଗ ପାଣି
ଅନେକ ଯଉତୁକ ସେ ଦେଲେ ରାମ ମାଧବ[9] ହେ
ସକଳ ଦେବେ ଇନ୍ଦ୍ରପୁରେ ରହିଲେ ସେ
ପୀୟୂଷ ପାନ ତହିଁ ସକଳେ କଲେ ସେ
ଇନ୍ଦ୍ରଙ୍କୁ ବହୁ ପ୍ରବୋଧ କରି    ଅନେକ କଥା ତାଙ୍କୁ ଉଆରି
ଶ୍ରୀରାମକୃଷ୍ଣ ଆଦି ସକଳେ ମେଲାଣି ହେଲେ ॥୨୫॥

---

୧। ଘ. ସଚଳ
୨। ଖ ଘ. କର ଯୋଡ଼ିଣ କଣ୍ଠୋକ୍ତି
ମୂର୍ତ୍ତି ହେଲା ଅପ୍ରାପ୍ତ ହେ
ଇନ୍ଦ୍ରପଦରୁ ନୋହିବ ଭଙ୍ଗ ନ
ରଙ୍ଗ ବହିଲା ମୋ ହୋଇ ମନ
ତୋତେ କି ହେବି ସ୍ତାବକ
କଳି କୃପାଜଳଧି ହେ
ଶ୍ରୀହସ୍ତେ ତହେ ମୋତେ ପଡ଼ାଅ ହାଣି ହେ
ମୂର୍ଦ୍ଧିସ୍ଥି ଦେବେ ହେଲେ ତ କୃପମଣି ହେ
ଏହି ବଚନରେ ନ ଯୋଗ ରଜା
ସ୍ୱର୍ଗରେ ହୋଇଲ ଦେବରାଜା
ଦୂତ ବିବାହ ଇନ୍ଦ୍ର ହୋଇଲେ ସମସ୍ତେ
ପୂର୍ଣ୍ଣ ହେ
କର୍ମହଁ ବାସବର ଶରୀର ବେଳା ନଷ୍ଟରୁ
ବହ୍ନିଶ୍ଚ କର    [ଅଧିକ ପାଠ]
୩। ଖ ଘ. ବଳଦେବଙ୍କୁ ସ୍ତୁତି କରିଣ ହୋଇଛୁ
ଉଭା ହେ
୪। ଖ ଗ. ଦେବେ ଆଶ୍ଚର୍ଯ୍ୟ
ଘ. ଦେବେ ଆଶ୍ଚର୍ଯ୍ୟ
୫। ଖ ଗ ଘ. ସାଦର
୬। ଖ ଗ ଘ. ପାଶେ
୭। ଖ ଗ ଘ. ସମ୍ପତ୍ତି
୮। ଖ. ଉତ୍ସବ
୯। ଖ. ଶ୍ରୀକୃଷ୍ଣ ମୁଣି ହେ

ଯଶୋବନ୍ତୀକ ବଧାଗା ଗଲେ    ଈଶ୍ୱର କଇଳାସେ ଗମିଲେ[1]
ସକଳ ଶିବଗଣଙ୍କୁ ଘେନ। ପାର୍ବଣ୍ଣ ଭୁଲେ ସେ
ଯୁଧିଷ୍ଠି ଭୀମ ଅର୍ଜ୍ଜୁନ ସେନ[2]    ଇନ୍ଦ୍ରଙ୍କ ପାଦେ କର ଦଇନ[3]
ରାମକୃଷ୍ଣଙ୍କୁ ମେଲାଣି ମାଗି ରଥେ ବସିଲେ ହେଁ
ଇନ୍ଦ୍ର ଆଜ୍ଞାରେ ଚତୁରଂ ମାତଳି[4] ଗଲେ ସେ
ତମାଳ ବନେ ତାଙ୍କୁ[5] ଘୁଞ୍ଚ ଅଇଲେ ସେ
ଶ୍ରୀ ରାମକୃଷ୍ଣ ସନ୍ୟ ସଙ୍ଗରେ    ପ୍ରବେଶ ହେଲେ ଦ୍ୱାରକା[6] ପୁରେ
ତାଙ୍କ ଚରଣ ଚନ୍ଦ୍ରଣ ବଶ୍ୱମ୍ଭର କହିଲେ ସେ[7] ।।୨୭।।

## ତ୍ରୟୋଦଶ ଛାନ୍ଦ

### ରାଗ— ଆହାରୀ

ତମାଳ ବନରେ ସେ ପଞ୍ଚ ପାଣ୍ଡବ ଦ୍ରୁପଦ ରାଜ ନନ୍ଦନୀ ହେ
ସେ ବନ ତେଜଣ ଭୁଇରେ[8] ଗମିଲେ ଯେଣଣ ସକଳ ମୁନି ହେ
ସୁଜନେ,[9] ବହୁତ ଦୂର ଗମିଲେ ହେ
ମହାଭୟଙ୍କର ନିବଡ଼ ଅନ୍ଧାର[10] ଅରଣ୍ୟ ବନେ ମିଳଲେ ସେ ।।୧।।

---

୧। ଖ. ଗହ୍ଲେ
ଗ. କଇଳାସକୁ ଗଲେ .
ଘ. ଅଇଲେ
୨। ଖ ଘ. ମନ୍ତ୍ରୀ
୩। ଖ. ପାସେ ଭକ୍ତି କରନ୍ତ
ଘ. ଭକ୍ତି କରନ୍ତ
୪। ଖ ଘ. ମାତେଲୀ
୫। ଘ. ନେଇ
୬। ଘ. ଦ୍ୱାରକା ପୁରେ
୭। ଖ. ଭଣିଲେ ହେ
୮। ଙ. ଭୁଇଁତେ
୯। ଖ. ରାଜାନ
୧୦। ଙ. ତୁଷାର ଅନ୍ଧାର

ସେ ବନ ଦେଖିଣ ଋଷିଙ୍କି ସୁନ୍ଦରୀ ପଚାରନ୍ତି[1] ଧର୍ମସୁତ[2] ହେ
ଏକମନ ହୋଇ ଅଗସ୍ତି କହନ୍ତି ଶୁଣିମା ହେଉ ଚରିତ[3] ହେ
ସୁଜନେ,[4] ନାମ ତା ହିରଣ୍ୟକେଶୀ ହେ
ଦିବ୍ୟ ସୁନ୍ଦରୀ[5] ଶତପୁର ମୋହନୀ ରହୁଥିଲା ଏଥେ ଆସି[6] ହେ ॥୨॥
ମୃଦୁଗଳ ଋଷି ମହାବ୍ରତଋଷି ମିଳିଲେ ତାର ଭୁବନେ ହେ
ପରମ ସୁନ୍ଦରୀ ମୁନି ମନୋହାରୀ ବସାଇ ତାଙ୍କୁ ଆସନେ[7] ହେ
ସୁଜନ,[8] କହଇ ହିରଣ୍ୟକେଶି ହେ
ମୁଁ ଏକା ସୁନ୍ଦରୀ ବନେ ତପ କରି ତୁମ୍ଭେ ତ ସହଜେ ଋଷି ହେ ॥୩॥
ଋଷି ତାହାକୁ ଦେଖି ବଶ ହୋଇଲେ ସେଜଗଲେ କର ଧରି[9] ହେ
ବ୍ରତ ଛଡ଼ାଇ ଷଡ଼ରସ ପ୍ରକାରେ ଅନ୍ନ ଦେଇ ମନ ହରି ହେ[10]
ସୁଜନ, ପିନ୍ଧାଇଣ ଦିବ୍ୟବାସ ହେ
କର୍ପୂର ଚନ୍ଦନ ଦିବ୍ୟ ପୁଷ୍ପମାନ କରଇ ତାଙ୍କୁ ସୁବେଶ ହେ ॥୪॥
ଦିବ୍ୟ ପଲଙ୍କେ ଅଙ୍କେ ତାଙ୍କୁ ଶୁଆଇ ବେନି ଚରଣ ମଞ୍ଜିଲ[11] ହେ
କାମେ ବଶ ହୋଇ ମୁଖେ ଚୁମ୍ବ ଦେଇ ଗାଢେ ଧରି[12] ଚପଲୀ ହେ
ସୁଜନ, ବସନ ତାର ଫେଡ଼ିଲେ ହେ
କଳେ ସୁରତ ରସ ଆଣି ଆରମ୍ଭ କରିଜ କୁଚେ ଚିପିଲେ[13] ହେ ॥୫॥

---

୧ । ଘ. ସେ ବନ ଦେଖିଣ ଋଷୀ ସୁନ୍ଦରେଣ
୨ । ଖ. ପଚ୍ଛରିଲେ ଧର୍ମଯୀଶ
୩ । ଖ. ଚରିତ ହେ
ଘ. ଅଗ[illegible] କହନ୍ତି ଏକମନେ
ଏବେ ପୁଣିମା କହାଇ
୪ । ଖ ଗ. [illegible]ଜନ
୫ । ଖ ଗ ଘ. ସୁନ୍ଦରୀ
୬ । ଖ. [illegible]ଥି ଆସି
ଘ. ଅ[illegible] ଏଥି
୭ । ଖ ଗ. ସେ ବେଶ୍ୟା ସୁନ୍ଦରୀ
ତାଙ୍କି ଦେଖିକରି ବସାଇ ଦିବ୍ୟ ଆସନେ
ଘ. ସେ ବଣା ସୁନ୍ଦରୀ ତାଙ୍କି ଦେଖି
କରି ବସାଇ ଦିବ୍ୟ ଆସନେ
୮ । ସୁଜନେ

୯ । ଖ ଗ. ଦେଖିଣ ବଶ୍ୟ ହେଲେ କରଧରି
ସେଜଗଲ ହେ
ଘ. ବଶ ହେଲେ କର ଧରି ସେଜଗଲେ ହେ
୧୦ । ଖ ଗ. ଅର୍ଣ୍ଣ ତାଙ୍କୁ ଭୁଞ୍ଜାଇଲ ହେ
ଘ. ଛଡ଼ରସ ପ୍ରକାରେ ଅର୍ଣ୍ଣ ତାଙ୍କୁ
ଭୁଞ୍ଜାଇଲେ ହେ
୧୧ । ଘ, ଦିବ୍ୟ ପଲଙ୍କେ ତାଙ୍କୁ ସୁଆଇ
ବେନି ଚରଣ ମର୍ଦ୍ଦିଲେ
୧୨ । ଖ ଗ. ଆଲିଙ୍ଗନ କରି ଚୁମ୍ବ ଦେଲେ
ଘ. ଆଲିଙ୍ଗନ କରି ଚୁମ୍ବନ ଦେଲେ
ଚପଳା ହେ
୧୩ । ଖ. କର ଯେ କୁଚ ପିଡ଼ିଲେ ହେ
ଗ ଘ. କରନ୍ତ କୁଚେ ପିଡ଼ିଲେ

ହିରଣ୍ୟକେଶୀ ସଙ୍ଗତେ ପଢ଼ିକରି ଚେଡ଼େ ଋଷି ନାଶ କଲେ ହେ
ଋଷି ଦେହ ଅନ୍ତେ ଏମନ ବସ୍ତିର ଶିବାକୁଳେ ଜାତ[1] କଲେ ହେ
ରାଜନ,[2] ସାରସ ନାମେ ଶୃଗାଳ ହେ
ଗତଜନ୍ମ ହେତୁ କରଣ ମନରେ ପୁଣ୍ୟ କଏ ବନ କାଳ ହେ ॥୭॥
ପିତା ମାତା ସ୍ଥାନେ ନରସ୍ତୁତା ନେଇଁ ଅନ୍ତ ଯତ୍ନେ ପାଳଥିଲ ହେ
ମହୀନ୍ଦ୍ର ରାଜାକୁ କନ୍ୟା ଦାନ କରି ଦୁହିତାକୁ ସମର୍ପିଲ ହେ
ରାଜନ, ସେ ପୁଣ୍ୟେ ଶିବା ମରଣେ ହେ
ସୂର୍ଯ୍ୟ ବଂଶରେ ସଗର ରାଜା ହୋଇ ଜାତ ହେଲ ହେତୁ ଗୁଣେ ହେ ॥୮॥
ତପସ୍ୟା କରି ଷାଠିଏ ସହସ୍ର ସୁତା ବିଧାତାକୁ ମାଗେ[3] ବର ହେ
ଦଇବ କୂଟରେ ରାଜମତ୍ତ ଭ୍ରମେ ଷାଠିଏ ସହସ୍ର କୁମର ହେ
ରାଜନ, ପୃଥ୍ୱୀ ମୃତ୍ତିକା ଭକ୍ଷିଲେ ହେ
ଧାତା ବଚନେ କପିଳ ଋଷି ଶାପେ ତାଙ୍କ ଶରୀର ଜଳଲେ ହେ ॥୯॥
ସେହି ବଂଶେ ଭଗୀରଥୀ ଜନ୍ମ ହୋଇ ବହୁତ ତପସ୍ୟା କଲେ ହେ
ବହୁ କଷ୍ଟେ କଷ୍ଟେ ଗଙ୍ଗାକୁ ଆଣିଣ ପିତୃଲୋକଙ୍କୁ ତାରିଲେ ହେ
ରାଜନ, ସଗର କୀର୍ତ୍ତି ସାଗର ହେ
ଭଗୀରଥୀ ଗଙ୍ଗା ବୋଲାଇଲେ ତେଣୁ ପତିତପାବନୀ ନୀର ହେ ॥୧୦॥
ଏହି ବନେ ଥାଇ କେତେକ ସମଏ ସେ ହିରଣ୍ୟକେଶୀ ମଲ ହେ
ଏଥି ପଥ ଜଗି ବହୁତ ଲୋକଙ୍କୁ କପଟରେ ପକାଇଲ ହେ[4]
ରାଜନ, ତେଣୁ ଏ ହିରଣ୍ୟ ବନ ହେ
ପିଶାଚୀ ରୂପେ ଅନ୍ଧକାର ହୋଇଛୁ ତେଣୁ ଏ ଧାତା ବଚନ[5] ହେ ॥୧୧॥

---

୧ । ଖ ଗ. ଯାତ
୨ । ଘ ସୁଜନ
୩ । ଘ. ମାଗ ବର ହେ
୪ । କ ଗ. ପୋଥିରେ "ସାରସ ନାମେ ଶୃଗାଳ—କପଟରେ ପକାଇଲ ପାଠ ନାହିଁ
୫ । ଖ ଗ. ପୂର୍ବେ ଧାତାର ବଚନ ହେ
ପିଶାଚି ରୂପେ ପୂର୍ବେ ଧାତାର ବଚନ ହେ

ଶୁଣି ପାଣ୍ଡବେ ଦଣ୍ଡେ ତହିଁ ରହିଣ ସତ୍ୱରେ ତହୁଁ ଚଳିଲେ[1] ହେ
ଧର୍ମସୁତଙ୍କୁ ଦେଖିକରି ପିଶାଚୀ[2] ମୋକ୍ଷ ଦେହକୁ ପାଇଲେ ହେ
ସୁଜନେ, ତହୁଁ ପାଣ୍ଡବେ ଦ୍ରୌପଦୀ[3] ହେ
ସକଳ ଋଷି ସେନ ସଙ୍ଗେ ମିଳିଲେ ଅଗସ୍ତି ବନେ ତତ୍‌କ୍ଷଣେ[4] ହେ ॥୧୨॥
ଦେଖିଲେ ସେ ବନ ଆନନ୍ଦ ସଦନ ସୁସ୍ୱାଦ[5] ଫଳ ଅଛନ୍ତି ହେ
ମାର୍କଣ୍ଡ ଋଷି ଧର୍ମନନ୍ଦନଙ୍କୁ ହରଷ ମନେ[6] କହନ୍ତି ହେ
ରାଜନ, ପୂର୍ବେ ଆତାପି ବାତାପି ହେ
ଏହି ବନେ ଗୃହ କରି ରହିଥିଲେ ମାଇଲେ ବହୁତ ତପୀ ହେ ॥୧୩॥
ଆତାପି ମେଷ କରି ସାନଭାଇକ ଦୁଆରେଣ ବାନ୍ଧି[7] ଥାଇ ହେ
ପଥିକମାନେ ପଥଶ୍ରାନ୍ତ[8] ହୋଇଣ ତହିଁରେ ମିଳନ୍ତେ ଯାଇ[9] ହେ
ରାଜନ, ତଦ୍‌ଭବେ ସେ ରଖାନ୍ତି ହେ
ଭୋଜନ କରି ଏଥୁ ସନ୍ତୋଷେ[10] ଯାଅ ମେଷ ଗୋଟିଏ[11] ମାରଇ ହେ ॥୧୪॥
ସେ ମାଂସ ଅତି ଯତ୍ନ କରି ରାନ୍ଧିଣ ଭୁଞ୍ଜାଇ[12] ପଥିକ[13] ଜନ ହେ
ଆନନ୍ଦେ କଲ୍ୟାଣ କରିଣ ତାହାକୁ ପଥିକ କରେ ଗମନ ହେ
ରାଜନ, ପଥେ ଆତାପି[14] ଗୋଡ଼ାଇ[15] ହେ
ଆସ ବାତାପି[16] ଆମ୍ଭର ପୁରେ ଯିବା ବୋଲିଣ ଉଚ୍ଚେ ଡାକଇ ସେ ॥୧୫॥

---

୧ । ଖ ଗ. କରନ୍ତି ସ୍ନାନ ତହିଁ ଚଳିଲା ଗଲା ହେ
ଘ. ଦଣ୍ଡେ ତହିଁ କ ରହି ସତ୍ୱରେଣ
ଚଳିଗଲେ ହେ
୨ । ଘ. ପିଶାଚି
୩ । ଖ ଦ୍ରୋପଦି
ଘ. ଦ୍ରୁପଦୀ ହେ
୪ । ଗ. ସଙ୍ଗତରେ ସେନାଣ ଅଗସ୍ତି
ବନେ ମିଳନ୍ତି ହେ
ଘ. ସଙ୍ଗରେ ସେନାକର ଅଗସ୍ତି
ବନେ ମିଳନ୍ତି ହେ
୫ । ଗ ଘ ଅତ୍ୟନ୍ତ ନିର୍ମଳ ସୁସ୍ୱାଦୁ
୬ । ଖ ଗ. ହର୍ଷ କରିଣ
ଘ. ହର୍ଷିଣ
୭ । ଖ ଗ. ବାନ୍ଧ
ଘ. ବାତାପି ସାନ ଭାଇକ
ମେଷ କରି ଦୁଆରେଣ ବାନ୍ଧ
୮ । ଗ. ପଥିକମାନେ ପଥଶ୍ରାନ୍ତ
ଘ. ପନ୍ଥିକମାନେ ପଥଶ୍ରାନ୍ତ
୯ । ଘ. ମିଳନ୍ତି
୧୦ । ଘ. ସନ୍ତୋଷେ ଏଥୁ ଯାଅ
୧୧ । ଖ ଗ. ସେ ମେଷ ଗୋଟି
୧୨ । ଖ. ଭୋଜନ କରି ରନ୍ଧାଂଶୁ ଯାଇ
ଗ ଘ. ସେ ମେଷ ଅତି ଭୋଜନ କରି
ରାନ୍ଧି ଭୁଞ୍ଜାଏ
୧୩ । ଗ. ପଥିକ
୧୪ । ଘ. ପଛେ ବାତାପି
୧୫ । ଗ. ସୁଜନେ, ପଛେ ଆତାପି ବାତାପି
ହେ
୧୬ । ଘ. ଆସ ଆତାପି

ଶୁଣି ବାତାପି[1] ପଞ୍ଜର ବଦାରଣ ଗର୍ଭ ବାହାର ହୁଅଇ ଯେ
ପଥିକ ପ୍ରାଣ ଭେକଣ ତତକ୍ଷଣ[2] ସେହି ଠାବରେ ପଡ଼ଇ ହେ
ରାଜନ, ଶବ ଯେହ୍ନ ବେଳଭ୍ରାନ୍ତି[3] ହେ
ସେ ମାଂସ ରନ୍ଧନ କରିଣ ଭୋଜନ ଆନନ୍ଦ କରନ୍ତ ଶତ୍ରୁ[4] ହେ ॥୧୬॥
ଯେମନ୍ତେ ଅନର୍ଜାପ[5] ମାଶ ଖାଇଲେ ଏ ବନ ବାଟ ପଡ଼ିଲେ[6] ହେ
ଏହା ଜାଣି ଧାତା ଅଗସ୍ତି ଋଷିଙ୍କି[7] ଏହି ବନକୁ ପେଷିଲେ[8] ହେ
ରାଜନ, ଅଗସ୍ତିଙ୍କି ସେ ଦେଖିଲେ ହେ
ଆତାପି ମେଷକୁ ମାରିଣ ତାହାଙ୍କୁ ଭୋଜନ ବାତାପି ଦେଲେ[9] ହେ ॥୧୭॥
ଭୋଜନ ଅନ୍ତେ ଚଳନ୍ତେ ମହାମୁନି ଆତାପି[10] ଡାକଇ ଆସ ହେ
ଅଗସ୍ତି ବୋଇଲେ ବାତାପି[11] ଆମ୍ଭର ଗର୍ଭେ ପଡ଼ିଗଲ[12] ନାଶ ହେ[13]
ରାଜନ କମଣ୍ଡଳୁ ଯେହ୍ନ ମାର ହେ
ମାରନ୍ତେ ତାର ଶରୀର ଭସ୍ମ ଗଲ[14] ବାତାପି ଅସୁର ହେ ॥୧୮॥
ବେନି ଅସୁରଙ୍କୁ ମାରିଣ ଅଗସ୍ତି ଏଥି ପଥ ଲୁହାଇଲେ[15] ହେ
ବିଧାତା ଏ ବନ ନିର୍ମଳ ଦେଖିଣ ଅଗସ୍ତି ବନ ବୋଇଲେ ହେ
ରାଜନ, ଗର୍ଭେ ଅପାକ[16] ହୋଇଲେ ହେ
ତତକ୍ଷଣେ ଜୀର୍ଣ୍ଣ ହୋଇବ ଅଗସ୍ତି ମନ୍ତ୍ର ପଢ଼ି ଝାଡ଼ିଦେଲେ ହେ ॥୧୯॥

---

୧ । ଘ. ଆତାପି
୨ । ଘ. ଭେକକର ଭୂଷଣେ
୩ । ଖ. ବେଳ ଭ୍ରାନ୍ତି
ଘ. ବେଳ ଭ୍ରାନ୍ତି ହେ
୪ । ଘ. ବେଳା ଦଇତ
୫ । ଖ ଘ. ଏବଂପେ ଅନର୍ଜାପ
୬ । ଘ. ବାଟ ପଡ଼ିଲ ହେ
୭ । ଖ ମୁନିଙ୍କି
୮ । ଘ. ବନକୁ ପେଷିଲ ହେ
୯ । ଘ. ମାରିଣ ଭୋଜନ
ସନ୍ତୋଷେଣ ତାଙ୍କୁ ଦେଲେ ହେ
୧୦ । ଖ. ବାତାପି
ଘ. ଚଳନ୍ତା ମହାମୁନି ବାତାପି
୧୧ । ଖ ଘ. ଆତାପି
୧୨ । ଘ. ଗର୍ଭରେ ପଡ଼ିଗଲ
୧୩ । ଗ. ନାଶ ଗଲେ
୧୪ । ଖ. ନାଶ ହେଲ
ଘ. ଭସ୍ମ ହେଲ
୧୫ । ଘ. ପଥ ବୁହାଇଲେ
୧୬ । ଘ. ଅଜୀର୍ଣ୍ଣ

ବାତାପି[୧] ଅସୁର ଭକ୍ଷଣ ଯେ କଲେ ଆତାପି[୨] ମହାପ୍ରବଳ ହେ
ସପତ ସାଗର ଯେ ଆପେ ଶୋଷି[୩] ଅଗସ୍ତି ବଡ଼ବାନଳ ହେ
ରାଜନ, ଏ ଋଷି ବଡ଼ ମହିମା ହେ
ଏହାଙ୍କ କଥା କହିଲେ ନ ସରଇ ପ୍ରଶଂସା କରନ୍ତି ବ୍ରହ୍ମା ହେ[୪] ॥୨୦॥
ଏ ବନ[୫] ଅତି ନିର୍ମଳ ସୁଖକର ଏ ବନେ[୬] ଆମ୍ଭେ ରହିବା ହେ
ଦେଖ ବରଷା ସମୟ ଆସୁଅଛି ଏଥିରେ ନିଶ୍ଚିନ୍ତେ ଥିବା[୭] ହେ
ରାଜନ, ବହ୍ୟ ଫଳମୂଳ ଅଛି[୮] ହେ
ଯେତେବେଳେ ଯାହା ଲୋଡ଼ିଲେ ପାଇବା ଆଶଙ୍କା ନ ଥିବ କିଛି ହେ ॥୨୧॥
ଶୁଣି ଧର୍ମସୁତ ହରଷ ହୋଇଣ[୯] ରହିଲେ ଅଗସ୍ତି ବନେ ହେ[୧୦]
ପର୍ଣ୍ଣଶାଳା ପୁର ଚହିଁରେ ରଚିଲେ[୧୧] ଭ୍ରାତମାନେ ଘନେ ଘନେ ହେ[୧୨]
ରାଜନ, ଧର୍ମନନ୍ଦନଙ୍କ ପୁର[୧୩] ହେ
ଘେରାଇ ଘେରପାଖେ ପୁର କଲେ ତହିଁ କିଛି କିଛି ଦୂରେ[୧୪] ହେ ॥୨୨॥
ଋଷିମାନଙ୍କୁ ଜଣେ ଜଣେ କରଣ ପର୍ଣ୍ଣଶାଳା[୧୫] ନିର୍ମି କଲେ ହେ
ଫଳ ମୂଳମାନ ବନରୁ ଆଣିଣ ଋଷିଙ୍କି ଭୋଜନ ଦେଲେ ହେ
ସୁଜନେ,[୧୬] ନିଶ୍ଚିନ୍ତେ ତହିଁ ରହିଲେ ହେ[୧୭]
ମୃଗୟା କରିଣ ଗଣ୍ଡା ମାରି ମାଂସ ଭୋଜନେ ସନ୍ତୋଷ ହେଲେ ହେ ।୨୩॥

---

୧ । ଖ ଘ ଆତାପି
୨ । ଘ. ବାତାପି
୩ ଖ. ସମୁଦ୍ର ଶୋଷଣ ଯେ କଲେ
ଘ. ସମୁଦ୍ର ଶୋଷ ଯେ କଲେ ଅଗସ୍ତି ବଡ଼ବାନଳ ହେ
୪ । ଗ. ପୋଥିରେ ୧୫-୧୬ ପଦ ହୁଇଟି ନାହିଁ
୫ । ଘ. ସେ ବନ
୬ । ଖ ଘ. ଏଥିରେ
୭ । ଗ. ନିଶ୍ଚିନ୍ତ ଏଥି ହୋଇବା ହେ
ଘ. ନିଶ୍ଚିନ୍ତେ ଏଥି ହୋଇବା ହେ
୮ । ଘ. ଫଳମୂଳ ଅଛନ୍ତି ହେ
୯ । ଖ ଘ. ଲଭିଣ
୧୦ । ଘ. ଅଗସ୍ତି ବନ ହେ
୧୧ । ଖ. ରଚିଲେ
ଘ. ପର୍ଣ୍ଣିପାଳା ପୁର ତହିଁରେ ରଚିଲେ
୧୨ । ଘ. ଭ୍ରାତମାନେ ଭିନ ଭିନ ହେ
୧୩ । ଖ. ପୁର
୧୪ । ଖ. ତହୁଂ କାହୁ କାହୁ ଦୂର ହେ
ଘ. ଲୁଟୀ କେ
୧୫ । ଖ. ପର୍ଣ୍ଣଶାଳ
୧୬ । ଖ. ରାଜନ
୧୭ । ଘ. ତହୁଂ ବସାଂ ରହିଲେ ହେ

ପଶ୍ଚିମ ବିପିନେ ପବନ ନନ୍ଦନ କତୁତ ଦୂର ଗମିଲେ ହେ[1]
ନିବିଡ଼ ବନରେ ଅପୂର୍ବ ପୁରୁଷେ ଅନ୍ଧ ହୋଇଛୁ ଦେଖିଲେ ହେ
ସୁଜନେ, ଅଷ୍ଟରତ୍ନ ସେ ଭୂଷଣ ହେ
ନିରତେ ଡାକଇ ସୁଧୃଷ୍ଟି ରଜନ କର ମୋତେ ପରିତ୍ରାଣ ହେ ॥୨୩॥
ଏମନ୍ତ ଦେଖି ମାରୁତି ଲେଉଟିଣ[2] କହେ ସୁଧୃଷ୍ଟି ଗ୍ରାମରେ ହେ
ଦ୍ରୌପଦୀ[3] ସହିତେ ସେ ପଞ୍ଚପାଣ୍ଡବେ ମିଳିଲେ ତହିଁ ସଭରେ ହେ
ରାଜନ,[4] ସୁଧୃଷ୍ଟି ମିଳନ୍ତି ପାଶ ହେ
ତତକ୍ଷଣେ ବେନି ନେତ୍ର[5] ସେ ପାଇଣ ଆନନ୍ଦ ଦିବ୍ୟ ପୁରୁଷ ହେ ॥୨୪॥
ସୁଧୃଷ୍ଟିଙ୍କ ପାଦେ ପ୍ରସନ କରି ବୋଲଇ[6] ଶୁଣ ନୃପତି ହେ
ପୂର୍ବେ ବିବାଦ ହେଲେ ବିଶ୍ୱାମିତ୍ର ସଙ୍ଗତେ ବଶିଷ୍ଠ ଯତି ହେ
ରାଜନ. ମୋ ନାମ ଅନଳ ବସୁ ହେ
ବିଶ୍ୱାମିତ୍ର ବୋଲେ ବଶିଷ୍ଠଙ୍କ ଗାଭ ହରଇ ମୁଁ ଦେନ ଆସୁଁ ହେ ॥୨୫॥
ଜାଣି ବଶିଷ୍ଠ ମୋର ପାଶେ ମିଳଣ ଗାଭ ନଅନ୍ତି[7] ଛଡ଼ାଇ ହେ
ମହାକ୍ରୋଧେ ମୁହିଁ ମୁଷ୍ଟିଏ ମାଇଲି ତାଙ୍କର ପଛେ ଗୋଡ଼ାଇ[8] ହେ
ରାଜନ, ମୋତେ[9] କୋପେ ଶାପ ଦେଲେ ହେ
ଅନ୍ଧ ହୋଇଣ ଏ ବନେ ମୋତେ ଯେବେ ନ ଛାଡ଼ିଲେ ରେ ॥୨୬॥
ତାଙ୍କର ପାଦତଳେ ପଡ଼ି କାରଣ ମାଗନ୍ତେ ହୋଇଲେ ତୋଷ ହେ
କହିଲେ ସତ୍ୟ ତ୍ରେତୟା ବେନି ଗଲେ ଯେବେ ସେ ହୋଇବ[10] ଶେଷ ହେ
ରାଜନ, ଦ୍ୱାପରେ ସୁଧୃଷ୍ଟି ଦେବ ହେ
କଉରବଙ୍କ କପଟେ ବନବାସ କରିବେ ପଞ୍ଚପାଣ୍ଡବ ହେ ॥୨୭॥

---

୧ । ପ. ପସିଲେ ହେ
୨ । ପ. ଲେଉଟିଲେ
୩ । ପ. ଦ୍ରୁପଦୀ
୪ । ପ. ସୁଜନେ
୫ । ପ. ବେନି ନୟନ
୬ । ପ. କହଣ ବୋଲନ୍ତି
୭ । ପ. ଗାଭ ନଅନ୍ତେ
୮ । ପ. ପିଟିଲି ତାଙ୍କ ପଛରେ ଗୋଡ଼ାଇ
୯ । ପ. ବନେ ଥାଅ ମୋତେ
୧୦ । ପ. ବେନି ଯୁଗ ହେବେ ହୋଇବ ଶେଷ ହେ

ସୁଧର୍ମ୍ମି ଦ୍ରୁସଜେ ନଯୁନ ଗାଇଣ ଆସିବୁ ଅମରପୁର ହେ
ସେବ୍ରହକୁ ମୂର୍ଚ୍ଛି ଅଛ ହୋଇ କର ପଢ଼ ଉହ୍ଲ ବନର ହେ
ରଜନ, ତେଣୁ ତୋ ନାମ ଧରଇ ହେ
ଏତେ କାଳେ ତୋତେ ଦେଖି କସ୍ତୁରଲ ଆଜ୍ଞା ଦେବ ନରପାଇଁ ହେ ॥୨୯॥
ଏତେ କହ୍ତି[1] ନମସ୍କାର କରଣ ଆକାଶ ମଣ୍ଡଳେ ଗଲେ ହେ
ମହା ସନ୍ତୋଷ ହୋଇ ପଞ୍ଚ ପାଣ୍ଡବେ ବାହୁଡ଼ି ତହୁଂ ଅଇଲେ ହେ
ସୁଜନେ, ମିଳଲେ ସେ ନଜ ବାସ ହେ
ଗଣ୍ଡା ମାତ୍ର ଦ୍ରବ୍ୟ ଭୋଜନ କରଣ[2] ଲଭୁଲେ ଅତି ହରଷ[3] ହେ ॥୨୦॥
ଏମନ୍ତେ କେତେଦନ ଅନ୍ତେ[4] ବରଷାରୁତୁ ହୋଇଲା ପ୍ରବେଶ ହେ
ଦନତ କଜ୍ଜଳ ପରାଏ ଉଜ୍ଜ୍ୱଳ ଘୋଟିଲା ଦ୍ୱଣ ଆକାଶ ହେ[5]
ସୁଜନେ, ଗିଳଦେଲା ଗିର ଶିର[6] ହେ
ତପନ[7] ଗର୍ବ ବନାଶ କର ଘନ[8] ଘୋଟାଇଲା ଅନ୍ଧକାର[9] ହେ ॥୩୧॥
ହଦସକୁ ଗର୍ଭେ ପୂରଇ[10] ରଖିଲା ସ୍ୱଚ୍ଛକୁ[11] ଜଳ ପ୍ରବଳ ହେ
ତାହା ଦେଖିକର ଆନନ୍ଦ ହୋଇଣ ଖେଳଲେ ଚଡ଼ୁଚ ମାନ ହେ
ସୁଜନେ, କରଇ ଘନ ଗର୍ଜନ ହେ
ତନ ଭୁବନକୁ ଶବଦ ଶୁଭିଲା ଡ଼ରଲେ ବୟୋଗୀ ଜନ ହେ ॥୩୨॥

---

୧ । ପ. ଏତେକ କହ
୨ । ପ. ଗଣ୍ଡା ମାତ୍ରେ ଦ୍ରବ୍ୟ ଭୋଜନେ ତୃପ୍ତି
୩ । କ ଗ. ପୋଥିରେ ୨୦ରୁ ୨୬ ପଦ
ଗୁଡ଼ିକର ପାଠ ନାହିଁ
୪ । ପ. କେତେ ଦନାନ୍ତରେ
୫ । ଖ. ଦଳିଲା କଜଳପର୍ବତ ସଜଳ ଜଳଦ
ଘୋଟେ ଆକାଶ ହେ
ପ. ଦଳିଲ କଜ୍ଜ୍ୱଳ କଳଦ ଘୋଟି
ଆକାଶ ହେ
୬ । ପ. ଗିରି ଶିର ହେ
୭ । ଖ ପ. ତପତ
୮ । ଖ ପ. ଦସ
୯ । ଖ. ଅନ୍ଧକାର
ପ. ଘୋଡ଼ାଇ କଲା ଅନ୍ଧାର ହେ
୧୦ । ଖ. ପୁରେଣ
୧୧ । ଖ. ଦ୍ୱସମ
ପ. ଉଦସ
୧୨. ପ. ତଡ଼ୀତମାଳ ହେ
୧୩ । ଖ ପ. କରନ୍ତ

କ୍ରମେ ସଲିଳ ମଣ୍ଡିତଲେ ପୂରିଲା[1] ବହିଲା ଝଂଜା ପବନ ହେ

ମହାମତ୍ତ ଭରେ[2] କେକା କେକା ଡାକି[3] ପୂରିଲା ଯାଇ ଗଗନ ହେ

ସୁଜନେ, ପ୍ରବଳ କଲା[4] ବରଷା ହେ

ଅନ୍ଧାର ଜଳ ଗହଳରେ ବାରିତ ନୋହିଲା[5] ଦିବସ ନିଶା ହେ ॥୩୩॥

ଦର୍ଦୁରମାନେ ଘୋର ଧ୍ୱନି କରନ୍ତି ଡାହୁକ ଅତି ପ୍ରବଳ[6] ହେ

କୁଧର ମହୀରୁହ ଶୋଭା ଦିଶନ୍ତି ଲଭିଲା[7] ବନ ଅନଳ ହେ

ସୁଜନେ, କୋକିଳ ହେଲେ ମଉନ ହେ

କେତେକ ହସିଲା କେତେକ ଭଟିଲା ଧନକୁ ଧନ ନିର୍ଜନ[8] ହେ ॥୩୪॥

କମଳେ ବୁଡ଼ାଇ କମଳ ରଖିଲା[9] ଦେଖିଲେ ତାହା ସାରସ ହେ

ଗମନ କଲେ ମାନ ସରୋବରକୁ[10] ହୋଇଲେ ଯାଇ ପ୍ରବେଶ ହେ

ସୁଜନେ, ପଥିକ ପଥ ଦୁସ୍ତର ହେ

ହାଳିକମାନେ କେଦାର ମାନଙ୍କରେ ଗୀତ କରନ୍ତି ବିସ୍ତାର ହେ ॥୩୫॥[11]

ନାବିକେ ନାବ ନ ଦେଇ ନିବର୍ତ୍ତିଲେ ନଦୀରେ ପ୍ରଳୟ ବଢ଼ି ହେ[12]

ବ୍ୟାପାରୀମାନେ ଏମନ୍ତ ଦେଖିକରି ଛାଡ଼ିଲେ ବ୍ୟାପାର[13] ଗ୍ରନ୍ଥି ହେ

ସୁଜନେ, ଛପରକୁ କଲେ ଆଦର[14] ହେ

କୃଷାଣ ପଡ଼ି ଗିରି ଶିରୁଂ ଝୁଡ଼ିଲେ ଖଣ୍ଡ ଶଇଳ ନିକର[15] ହେ ॥୩୬॥

---

୧। ଗ. ଛନ୍ଦିଲା
   ଘ. ମଣ୍ଡିତଳ ଛୁନ୍ଦିଂଲା
୨। କ. ମହାମତ ଭରେ
   ଘ. ମହାତମ ଭରେ
୩। ଖ ଘ. ଏକା
୪। ଘ. ପ୍ରବଳେ
୫। ଖ. ଗହଳେ ନ ବାରିଲେ କେ ଅଛେ
   ଘ. ଜଳ ଗହଳ ନ ବାରିଲେ କେ ଅଛେ
୬। ଗ. ଡ଼ାକ ଗହଳ
   ଘ. ଧ୍ୱନି କରନ୍ତି-ଡ଼ାକ ଗହଳ ହେ
୭। ଖ ଘ. ଧନ୍ଦତେ ସୁନ୍ଦର ଦଶିଲା ଲିଭିଲେ
୮। ଖ: କେତେକ କଅଁଳୁ କେତେ ହସିଲା
   ଘ. ଧନକୁ ଧନ ଦୁର୍ଜନ ହେ
୯। ଗ. କମଳ ବୁଡ଼ାଇ ରଖିଲା କମଳ
୧୦। ଗ. ମାନସ ସରୋବରେ ସେ
୧୧। 'ଘ' ପୋଥିରେ '୨୪' ପଦଟି ନାହିଁ
୧୨। ଖ ଘ. ନଦୀରେ ନାବ ପ୍ଳବଯୋଗ୍ୟ
   ନଗିଲେ ନାବିକେ ନଉଡ଼ୀ ହେ
୧୩। ଗ ଘ. ବାଣିଜ୍ୟ
୧୪। ଆଦର କଲେ
୧୫। ଖ ଘ. କୃଷାଣ ପଡ଼ିବାରେ ଗିରି ଶୀରକୁଂ
   ଖଣ୍ଡ ପଥର ଝଡ଼ିଲେ ହେ

ଏମନ୍ତ ସ୍ୱରୂକୁ ଦେଖି ଧର୍ମସୁତ[1] ଅନ୍ତ ଆନନ୍ଦ ହୋଇଲେ ହେ
ଚଞ୍ଚଳ ଝଟକ ଦ୍ରୌପଦୀ ଦେଖିଣ ତାଙ୍କୁ[2] ଆଲିଙ୍ଗନ କଲେ ହେ
　　ସ୍ୱଜନେ, ଝଟକେ କର ନବେଣୀ ହେ
କୋଳେ ଧରି ପ୍ରିୟବଚନ ହସିଣ ନୟାନ ଘନ ଦେଖାନ୍ତି[3] ହେ ॥୩୭॥
ଆରେ ପ୍ରାଣ ପ୍ରିଏ ତୋ କେଶ ପରାଏ ପଶ୍ଚିମେ ଉଦଏ ଘନରେ
ତୋ କାନ୍ତି ଦେଖି ନଶ୍ଚଳେ ନ ରହିଲ ବନ୍ଧୁର ଚଞ୍ଚଳ ମନରେ[4]
　　ସଜନୀ[5], ଦେଖ ଶଙ୍ଖ ଶରାସନରେ
ତୋ ଭ୍ରୁ ସମ ନୋହିବାରୁ ଆପଣା ଶରୀର କରୁଛି ଲୀନରେ[6] ॥୩୮॥
ଦେଖ ଏ ବକ ମଣ୍ଡଳକୁ ସୁନ୍ଦର ଦଶେ ତୋହୋର[7] ସମାନରେ
କନ୍ଦର୍ପ ଦର୍ପ ଅଭଣସୁ ବଢ଼ିଲ୍[8] ବିୟୋଗୀ କରେ ଦହନ ରେ
　　ସଜନୀ,[9] ଗ୍ରୀଷ୍ମ ଦିବସ ବରଷା ରେ
ଘଡ଼ଘଡ଼ ରଡ଼ ପଡ଼ୁଅଛି ମାତ୍ର ଭୁ ପିନା ମୋର ଉରସାରେ ॥୩୯॥
ଶୁଣି ସେ ବାଣୀ ତରୁଣୀ ଶିରୋମଣି ବାମନୟନାନ୍ତେ ଗ୍ରହ୍ନିଁ ଯେ
କେଳି କଉତୁକେ ବରଷ ବଞ୍ଚିଲେ ମନରେ ଆନନ୍ଦ ହୋଇ ହେ
　　ସୁଜନେ, ଦ୍ରୌପଦୀ ବେନି ଚରଣ ଯେ
କହିଇ ଦୀନ ବଶୁମ୍ଭର ଚିତ୍ତିରେ ଶନ୍ତ ପଶିଲି ଶରଣ[10] ହେ ॥୪୦॥

---

୧ । ପ. ଏମନ୍ତ ସ୍ୱରୁ ଦେଖିଣ ଧର୍ମସୁତ
୨ । ଘ. ଦେଖିଣ ଦ୍ରୁପଦୀ ତାଙ୍କୁ
୩ । ଖ. କୋଳେ ଧରେ ପ୍ରିୟବଚ ହେ
ପ. ଝୁଟକେ କର ନବେଶିଣ ନୟାନ ଘନକୁ
ଦେଖାଇ ଦେନ୍ତି ହେ
୪ । ଖ. ନରହିଲ ଡୋଳିଚ ବନ୍ଧୁର
ପ. ନ ରହିଲ ଚେତି ବନ୍ଧୁର
୫ । ଖ. ସ ଜନି ମା
୬ । ଖ. ଲିନରେ
ପ. ନୋହିବାରୁ ଆପଣା ଶରୀର କରୁଛି
ଲିନରେ
୭ । ଙ. ବଲାକା ମଣ୍ଡଳ ସୁନ୍ଦର ଦଶେ ତୋ
ହାର
ପ. ବଲାକା ମଣ୍ଡଳ ସୁନ୍ଦର ଦଶେ
ତୋହୋ ସମାନ ରେ
୮ । ପ. ଅତୀମସୁ ବଢ଼ିଲ
୯ । ସ. ସଙ୍ଗିନୀ
୧୦ । ଙ ପ. ଶୁଣି ସୁନ୍ଦର ବାଡେ ଭଡ଼ୀ
ତ୍ରିମ୍ବିକ ଦଅଲୀ ତାଙ୍କ ମୁଖରେ ହେ
କେଳି କଉତୁକେ ସେ ଦେନା ବଞ୍ଚିଲେ
ବରଷା ମହା ସୁଖରେ ହେ
ସୁଜନେ, ଦ୍ରୌପଦୀ ପଦୀ ଚରଣ ହେ
କହଇ ଦନ କୃଷ୍ଣ ମ୍ଭର ଚିତ୍ତିରେ
ପଶିଲି ମୁହିଁ ଶରଣ ହେ ॥

## ଚତୁର୍ଦ୍ଦଶ ଛାନ୍ଦ

### ରାଗ—କଳସା

ଏକ ଦିନେ ଅର୍ଜ୍ଜୁନ ଯେ[1] ମୃଗୟାକୁ ଗଲେ, ଗଣ୍ଡାବନେ ନେଉଁ ଯେ କାହିଁରେ[2] ନ ପାଇଲେ

ପିଙ୍ଗଳ ପର୍ବତେ[3] ହୋଇଲେ ପରବେଶ, ପିଙ୍ଗଳାକ୍ଷି ଦେବୀଙ୍କି ଦେଖିଣ ହେଲେ ତୋଷ[4] ॥୧॥[5]

ଭ୍ରସନ କରି ତାହାଙ୍କୁ[6] ବାହୁଡ଼ି ଅଇଲେ, ଦିବ୍ୟ ସରୋବର ତହିଁ ନିକଟେ ଦେଖିଲେ

ନିତ୍ୟକୃତ୍ୟ ସାରଣ[7] ସେ ହୋଇଲେ ଆନନ୍ଦ, ମଳୟ ପବନ ଯେ ବହିଇ ମନ୍ଦ ମନ୍ଦ ॥୨॥

ସେହି ବନ ଅତ୍ୟନ୍ତ[8] ଯେ ଅଟଇ ନିର୍ମଳ, ନିଦ୍ରାରେ ଯେ ଅଶକତ ପଣ୍ଡୁରାଜା ବାଳ

ଦକ୍ଷିଣକୁ ସୀମସ୍ଥାନ କରି ପହୁଡ଼ିଲେ, ଅଚେଷ୍ଟ ହୋଇକରି ତହିଁରେ ନିଦ୍ରା ଗଲେ ॥୩॥

ଦ୍ୱାରବତୀ[9] ରଥ ଚଢ଼ି ପ୍ରବେଶ ହୋଇଲା, ପିଙ୍ଗଳାକ୍ଷିଙ୍କି ଭ୍ରସନ କରି ବାହୁଡ଼ିଲା

ଅର୍ଜ୍ଜୁନର ପାଶେ ଯାଇଁ[10] ହୋଇଲା ପ୍ରବେଶ, ସୁନ୍ଦର ପୁରୁଷ ଦେଖି ମଦନରେ[11] ବଶ ॥୪॥

ଭୂମିରୁ ତାହାଙ୍କୁ ନେଇ ରଥେ ଶୁଆଇଲା[12], ଆପଣା ମନ୍ଦିରେ ଯାଇ ପ୍ରବେଶ ହୋଇଲା[13]

---

୧ । ଖ ଘ. ଦିନେକ ଇନ୍ଦ୍ର ନନ୍ଦନ
୨ । ଘ. ଗଣ୍ଡା ମିଗ ନେଉଡ଼ୀ ତହିଁ କାହିଁ
୩ । ଘ. ପିଙ୍ଗଳ ପର୍ବତରେ
୪ । ଖ. ହରଷ
ଘ. ଦେବୀଙ୍କି ସେ ଦେଖିଣ ହରଷ
୫ । କ ଗ. ପୋଥିରେ ଏହି ଛଅଟି ପାଦରେ ଗୋଟିଏ ପଦ ହୋଇଛି
୬ । ଘ. ଭ୍ରସନ କରି ତାଙ୍କୁ
୭ । ଖ. ନିତ୍ୟକର୍ମ ସାରି ତହିଁ
ଘ. ନିତ୍ୟକର୍ମ ସାରି ତହୁଁ
୮ । ଖ. ସହଜେ ସେ ବନ ଅଟେ ଅତ୍ୟନ୍ତ
ଘ. ସହଜେ ବନ ଅଟେ ଅତ୍ୟନ୍ତ
୯ । ଘ. ନିଦ୍ରାଭରେ ଅପକଟ
୧୦ । ଭ. ସାମନ୍ତିବା
୧୧ । ଘ. ଦ୍ୱାରବତୀ
୧୨ । ଘ. ଅର୍ଜ୍ଜୁନ ପାଶରେ ଯାଇଁ
୧୩ । ଖ ଘ. କାମେ ହୋଇ
ଘ. ଭୂମିରୁ ତୋଳିଣ ତାକୁ ରଥରେ
ଖ ଘ. ଭୁଜରେ ମିଳିଲା

ଯେତେବେଳେ ଚେତନା ପାଇଲେ ଫାଲଗୁନ, ଦେଖିଲେ ବସି ଅଛନ୍ତି[1] ତ୍ରିପୁର ମୋହନୀ ॥୫॥

ପଚ୍ଛରିଲେ କେ ତୁ[2] ଅଟୁ କାହାର କୁମାରୀ, କମ୍ପାଇଁ ବନସ୍ତରୁ ଆଣିଲୁ ମୋତେ ହରି

କେବଣ କାର୍ଯ୍ୟ ତୋର କହରେ ସମାଚାର, ଶୁଣିଣ ହସି ସୁନ୍ଦରୀ[3] କହଇ ଉତ୍ତର ॥୬॥

ଏହି ସେ କାଞ୍ଚି ନଗର[4] ଅସୁର ଭୁବନ, ନିକୁମ୍ଭ ନାମରେ ଦୈତ୍ୟ ଏଥିର ରାଜନ

ତିନପୁରେ ପ୍ରତାପୀ ଯେ[5] ମହାବଳଆର, ଦେବତାମାନଙ୍କର[6] ଉପରେ ସେ[7] ଠାକୁର ॥୭॥

ମୁହିଁ ବିଦ୍ୟାଧରୀ ସ୍ୱର୍ଗପୁରର[8] ସୁନ୍ଦରୀ, ଅମର ପୁରରୁ ଅସୁର ଆଣିଅଛି[9] ହରି

ମାୟାବଳେ ମୁହିଁ ତାକୁ ସତ୍ୟ ଯେ କରାଇ, ଅବରାଇ କନ୍ୟା ମୋ ପୁରୁଷ[10] ମେଳ ନାହିଁ ॥୮॥

ପିଙ୍ଗଳାକ୍ଷି ଦେବାଙ୍କି କରଇ ବରଣେ[11], ଇଚ୍ଛାବର ତାହାଙ୍କୁ ମାଗଇ[12] ପ୍ରତିଦିନ

ଆଜମୋତେ[13] ମହାମାୟା ପ୍ରସନ୍ନ ହୋଇଲେ, କାନ୍ତ ଆଣି ସ୍ୱାମୀକରି ତୁମ୍ଭଙ୍କୁ ସେ[14] ଦେଲେ ॥୯॥[15]

---

୧। ଘ. ଦେଖିଲେ ଯେ ବସିଛନ୍ତି

୨। ଖ. ତୁହି
ଘ. ପଚ୍ଛରନ୍ତି ତୁହି

୩। ଘ. ଶୁଣିଣ ସୁନ୍ଦରୀ ହସି

୪। ଖ. କାଞ୍ଚି
ଘ. କାଞ୍ଚି ନଗର

୫। ଘ. ପ୍ରତାପି ଯେ

୬। ଖ. ନିଦପୀ ଦେବତାଙ୍କର
ଘ. ନିଦସ୍ୟ ଦେବତାଙ୍କର

୭। 'ଖ' ପୋଥିରେ ଏହି ପାଠ ନାହିଁ
ଘ. ଉପରେ ଠାକୁର

୮। ଖ ଘ. ମୁହିଁ ହାଦେ ବିଦ୍ୟାଧରୀ ସ୍ୱର୍ଗରେ

୯। ଖ. ଦୈତ୍ୟ ଆଣିଲା ମୋତେ
ଘ. ଦୈତ୍ୟ ଆଣିଲା ମୋତେ

୧୦। ଖ. ମୁହ ପୁରୁଷେ
ଘ. ମୁଁ ପୁରୁଷେ

୧୧। ଖ. ଯେ କରଇ
ଘ. ପିଙ୍ଗଳାକ୍ଷି ଦେଖ ମୁ କରଇ ବ୍ରତନ

୧୨। ଖ. ମାଗଇ ମୁଂ ତାଙ୍କୁ
ଘ. ତାଙ୍କୁ ମୁଁ ମାଗଇ

୧୩। ଖ. ସେତେ ଦିନେ
ଘ. ଏତେ ଦିନେ

୧୪। ଖ ତୁମ୍ଭଙ୍କୁ ଆଜ ସେ ମୋତେ
ଘ. ତୁମ୍ଭଙ୍କୁ ମୋତେ ସେ ଆଜ

୧୫। 'କ' ପୋଥିରେ ତ୍ରୟୋଦଶ ଛାନ୍ଦର

୧୬। ପଦଠାରୁ ଚତୁର୍ଦ୍ଦଶ ଛାନ୍ଦର
୯ମ ପଦ ପର୍ଯ୍ୟନ୍ତ ନାହିଁ
'ଗ' ପୋଥିରେ ଏହି ଛାନ୍ଦର ୧୨ ପଦ
ପର୍ଯ୍ୟନ୍ତ ପାଠ କୀଟଦଷ୍ଟ

ମୋ ରୂପ ଅନୁରୂପରେ[1] ତୁମ୍ଭେ ଅଟ ବର, ଆସି ପ୍ରାଣନାଥ ହସି ମୋତେ[2] କୋଳ କର

ମୁଖରେ ଚୁମ୍ବନ ଦେଇ କାମଜ୍ୱର ନାଶ, ରତିରସ ଦେଇଣ ମୋହୋର ମନ ତୋଷ ॥୧୦॥

ଅନେକ କାଳରୁ ମୁ ସେ[3] ଆଶ କରିଅଛି, ଏତେବେଳ ପାଏ ସେ କେମନ୍ତ ଅଛ ମୂର୍ଚ୍ଛି[4]

ତୁମ୍ଭର ରୂପକୁ[5] ଦେଖି ହୋଇଲି ମୁଁ ବାଇ, କନ୍ଦର୍ପ ମୁଖରୁ ମୋତେ ରକ୍ଷର[6] ଗୋସାଇଁ ॥୧୧॥

ଅର୍ଜୁନ ଶୁଣି ବୋଇଲେ[7] ରହ ରହ ସଖି, ବହ୍ନଳର[8] ନୁହ ତୁ ମୋହୋର ରୂପ ଦେଖି

ପର ସ୍ତ୍ରୀର ମାତା ପର ପୁରୁଷ ମୋ ପିତା,[9] ପରଦ୍ରବ୍ୟ ନ ହରଇ ନ କରେ[10] ଅହଙ୍କା ସୋ॥୧୨

ପର କାର୍ଯ୍ୟରେ ଶସ୍ତ୍ର ମୁଂ ନ ମାରଇ ରଣେ[11], ଦୁଃଖୀ ଲୋକର ବନ୍ଧୁ[12] ମୁଂ ଶରଣ ରକ୍ଷଣେ

ମୋତେ ଆଶ ନ କର ତୁ[13] ତରୁଣୀ ସୁନ୍ଦରୀ, ମୁହିଂ ବନବାସୀ ତୋ ରୂପକୁ କାହିଂ[14] ସରି॥୧୩॥

---

୧ । ଘ. ମୋ ରୂପ ଅନୁରୂପେ

୨ । ଖ ଘ. ଆସ ଆସ ପ୍ରାଣେନାଥ ହସି

ଗ. ଆସ ପ୍ରାଣନାଥ ହସିଣ

୩ । ଗ. କାମକାରୁଂ ମୁଂ

ଘ. ଅନେକ ଦନରୁ ମୁହିଂ

୪ । ଗ. ଏତେବେଳେ ଜାଏ ମୋତେ

କେମନ୍ତେ ଅଛୁ ମୁଛୁ

୫ । ଗ. ତୋହୋ ରୂପ

୬ । ଖ. ରଖିବା

୭ । ଖ. ଧନଞ୍ଜୟ ବୋଇଲେରେ

ଗ. ବୋଇଲେରେ

ଘ. ଧନଞ୍ଜୟ ବୋଇଲେରେ

୮ । ଖ ଗ ଘ. ବହ୍ନଳତ୍

୯ । ଖ, ମୋର ପର ପୁରୁଷ ପିତା

ଚ. ପର ପୁରୁଷ ମୋର ପିତା

ଘ. ପର ନାରି ମାତା ମୋର

ପର ପୁରୁଷ ପିତା

୧୦ । ଘ. ନ କରି

୧୧ । ପରକାର୍ଯେ ସତ୍ରୁକୁ ନ ମାରଇ ରଣ

୧୨ । ଗ. ଲୋକବନ୍ଧୁଂ ମୁଂ

ଘ. ଦୁଖିଲୋକ ବନ୍ଧୁ ମୁଂ ସରଣ ରକ୍ଷିଣ

୧୩ । ଖ. ଆହ୍ଲ ତୁହିଂ ନ କର

ଗ. ତୁ ସ୍ନେହେ ନ କର

ଘ. ଆହ୍ଲ ଏବେ ନ କର

୧୪ । ଖ. କୋହେ

ହ୍ୱାବବନ୍ତୀ[1] ବାମା ବୋଲେ ଆହେ ପ୍ରାଣନାଥ[2], କପାଇଁ[3] ନବଶ କର କହ୍ଲ ଏମନ୍ତ
ପ୍ରସନ୍ନେ ଦେବା ତୁମ୍ଭଙ୍କୁ ବର କର ଦେଲେ[4], ବଗୁଣ୍ଠ ଦଣ୍ଡ ଦଅ ମୋହୋର ଦୋଷ ଥିଲେ॥୧୪
ନୁହଇ ପର ନାରୀ ମୁଁ ତୁମ୍ଭ ପ୍ରିୟବନ୍ତୀ[5], ଅବୋଧ ବାମା ମୁଂ ଅଟେ[6] ନବୀନ ଯୁବତୀ[7]
କନ୍ଦର୍ପ ଭୟରେ[8] ମୁହିଁ ପଶିଲି ଶରଣ, ତୁମ୍ଭେ ଯେ ବୋଇଲ[9] ମୁହିଁ ଶରଣ ରକ୍ଷଣ ହେ ॥୧୫॥
ଅର୍ଜ୍ଜୁନ ବୋଇଲେ ଯେ ନୁହଇ[10] କଦାଚତେ. କଉଁଧନ[11] ବଶ ମୁହିଁ ହୋଇଥିଲି ଚୋତେ
ଏ ମୋହୋର ବଚନ ଯେ[12] ପାଷାଣର ଗାର; ତୁମ୍ଭେ ନଷ୍ଟନାରୀମାନେ ଇଚ୍ଛାବର ବର[13]॥୧୬॥
ଏବେ ମୋତେ ମେଲ୍ଲିଣି ଯେ ଦଅରେ[14] ସୁନ୍ଦରୀ, ସତ୍ୱର ହୋଇଣ ମୁହିଁ ଯିବ ମୋର[15] ପୁରୀ
ଏହି ସମୟରେ ଯେ ଖଣ୍ଡିଆ ଡାକ ଦେଲା, ହ୍ୱାବବତୀ ବଗୁରଇ ନୃପତି ଅଇଲା ॥୧୭॥
ଅର୍ଜ୍ଜୁନକୁ ଝୁଣ୍ଟି ବାମା କହଇ ଉତ୍ତର, ନକୁନ୍ତ ଦୈତ୍ୟ ବଜଏ କଲା ମୋର ପୁର
ତାହାର ଗ୍ରାମରେ ଟୋକେ ଦେବ ନେଇ ଧର, ବୋଲବ ଏ କାହୁଂ ଆସି ପଶିଲା ମୋ ପୁରୀ॥୧୦॰

---

୧। ଗ ଘ. ହ୍ୱାବ୍ବନ୍ତ
୨। ଙ. ହ୍ୱାବ୍ବନ୍ତ ବୋଇଲ ରୁ ସୁଣ
ଘ. ହ୍ୱାବ୍ବତୀ ବୋଇଲେ ସୁଣ ପ୍ରାଣକାନ୍ତ
୩। ଙ. କମ୍ପାଇ
୪। ଗ. ପ୍ରସନ୍ନ ହୋଇ ଦେବ ତୁମ୍ଭଙ୍କୁ ବର
ଘ. ପ୍ରସନ୍ନ ହୋଇ ଦେବା ତୁମ୍ଭକୁ ମୋତେ
୫। ଘ; ନୁହଇ ମୁଂ ପର ସ୍ତ୍ରୀଣ ତୁମ୍ଭ
ପ୍ରିୟବନ୍ତୀ
୬। ଙ. ମୁହିଁ ଯେ
ଗ. ମୁହିଁ
ଘ. ମୁହିଁ ଯେ
୭। ଚ. ବସୁମି
୮। ଗ. ଡରେ ମୁହିଁ
ଘ. କନ୍ଦର୍ପ ପାଦେ ତୋ ପିହେ
୯। ଘ. ତୁମ୍ଭେ ବୋଇଲ
୧୦। ଘ. ବୋଇଲେ ନୁହଇ
୧୧। ଘ. କେଉଁ ଧନ
୧୨। ଘ. ବଚନ ସେ
୧୩। ଖ. ରୁ ଗୋ ନଷ୍ଟ ନାଗର ବଶରୁ
ଇଚ୍ଛା ବର
ଘ. ତୁମ୍ଭେ ନଷ୍ଟ ନାଗର ବଶବ ଇଚ୍ଛା ବର
୧୪। ଘ. ମେଲିଣି ରୁ ଦଅରେ
୧୫। ଙ. ସତ୍ୱରେଣ ଚଳିଯିବ ଏ ମୋହୋର
ଗ. ସତ୍ୱରେଣ ମୁହିଁ ଯିବଇ ମୋର
ଘ. ସତ୍ୱରେ ଚଳଇ ମୁହିଁ ଯିବ

ମୋତେ ବନେ ହରିବାକୁ କରଇ ବସ୍ତୁର, ଏହା ଶୁଣି ପ୍ରାଣେ ତୋତେ ମାରିବ ଅସୁର

ମୋତେ ପ୍ରୀତି କଲେ ତୋତେ ଲୁଚ୍ଛଇ ରଖିବ, କଥାରେ ଭୁଲାଇ ତାକୁ ବାହୁଡ଼ାଇ ଦେବା ॥୧୯॥

ଅର୍ଜୁନ ବୋଇଲେ ମୋତେ ଭଗଇ କହୁଲେ, ଏ ମୋହୋର ଶତ୍ରୁ ଆଜ୍ଞ ନ ଟଳଇ[1] ଭଲେ

ଭାଗବତୀ ବୋଲେ କାହିଁ[2] ଏହୁ କଥା, ଏ ମୋହୋର ବଚନ ସେ କଲୁକି[3] ଉପେକ୍ଷା[4] ॥୨୦॥

ମାୟାବରେ ଅର୍ଜୁନକୁ ପକାଇ ଗାର୍ତ୍ତ କୂପେ, ଲେଉଟି[5] ବସିଲା ଯାଇ ପଲଙ୍କ ସମୀପେ

ସାତତାଳେ ଗର୍ତ୍ତରେ ପଡ଼ିଲେ ଧନଞ୍ଜୟେ[6], ନବର୍ତ୍ତ ଅନ୍ଧକାର ସେ ସବୁ ଭ୍ରମମୟେ[7] ॥୨୧॥

ବାହାରି ଆସିବାକୁ ତହିଁରେ ନାହିଁ ବାଟ, ଅର୍ଜୁନକୁ ପଡ଼ିଲା ଯେ ଦୁଃସହ ସଙ୍କଟ[8]

ଭାଗବତୀ[9] ସମୀପେ ନକୁଳ ପରବେଶ, ବୋଇଲା ତହୁଁ ତ[10] ମନୁଷ୍ୟର ବାସ ॥୨୨॥

ଭାଗବତୀ[11] ବୋଇଲା ମୁଁ ଏକା ଅଛୁ ପୁର; ଏମନ୍ତ ନ କହ ତୁ ଭୋଜନ[12] ମୋତେ କର

ଶୁଣିକରି ଦାନବ ଯେ ଫଟିଲା[13] ରସନା, ତୁ ଭାଗବତୀ ମୋହୋର ଗାବ[14] ଅଟୁ ପ୍ରିନା ॥୨୩॥

---

୧ । ଘ. ନ ଟଳିବ
୨ । ଘ. କାହିଁ ସିବ ଏତେ
୩ । ଘ. ସେବେ କଲୁକି
୪ । କ ଗ. ପୋଥିରେ ୧୮-୨୦ ପଦର ପାଠ ନାହିଁ
୫ । ଖ ଗ ଘ. ପାଳନ୍ତି
୬ । ଘ. ପଡ଼ିଲେ ଧନଞ୍ଜୟ
୭ । ଖ. ମାୟାମୟ
ଗ ଘ. ସକଳ ମାୟାମୟେ
୮ । ଖ. ପଡ଼ିଅଛୁ ଏ ଘୋର
ଗ. ପଡ଼ିଲ ସେ ଘୋର
୯ । ଘ-ଯାଉନ୍ତି ପୋଥିରେ ନାହିଁ
୧୦ । ଗ. ଭାଗବତୀ
ଘ. ଭାଗବତୀ ପାଖରେ
୧୧ । ଖ. ବୋଇଲାତ ତହୁଁଟଏ
ଘ. ଦେଖନ୍ତ
୧୨ । ଖ ଗ ଘ. ଭାଗବତୀ
୧୩ । ଘ. ଏମନ୍ତ ସେବେ କହୁ ଭୋଜନ
୧୪ । ଘ. ଶୁଣିକରି ଦଯାରେ ଦେଖିଲା
୧୫ । ଭାଗବତ ମୋର ଜିବନ
ଘ. ଭାଗବତୀ ମୋହର ପ୍ରାଣ

ଏ ମୋହୋର ଜୀବନ ଯେ[1] ଯାଉ କନା ଜଳ, ତୋହୋ ପଦ୍ମପାଦ ଧୂଳି ପଡ଼ୁ ମୋ[2] ମସ୍ତକ
ଆଜ୍ଞା ଦନେ ଏମନ୍ତ ଭୁ ନ କହିବୁ[3] ମୋତେ, ଆନନ୍ଦ ହେଉଥାଇ ମୁଂ ଦେଖୁଥିଲେ[4] ତୋତେ॥୨୪
କହିଁବନ[5] ତୋ ଅଙ୍ଗ ଛୁଇଁବ ସମାକର, ସେହୁଦନ ସାର୍ଥ[6] ହେବ ଶରୀର ମୋହୋର[7]
ଏତେ କହୁ ବାତୁଡଣ ଗଲ[8] ଦଡଂସ୍ଥଏ[9], ଜୀର୍ଣ୍ଣ କୂପ ପାଶେ ଯାଇ[10] ସୁନ୍ଦରୀ ବଜଏ ॥୨୫॥[11]
ଡାକଇ[12] ହେ ପ୍ରାଣନାଥ ମୋର[13] ବୋଲକର, ଅକାରଣ କଥାରେ ଯେ ନ ଗୁଢ଼ ଶରୀର[14]
ଅର୍ଜୁନ ବୋଇଲେ ଏ ଯେ[15] ସତ୍ୟ ମୋର ବାଣୀ, ଏଥିରେ ପ୍ରାଣକୁ ମୁହିଂ ତେଜବ ତରୁଣୀ[16]॥୨୬
ପୁରୁଷ ହତ୍ୟାକୁ ମାଡ[17] ଅର୍ଜିଲୁ ସୁନ୍ଦରୀ ପୂର୍ବେ ତୋତେ ମୁହିଁ ତ ନଥିଲି[18] ଦୋଷ କର
ଏ କଷଣ ମୋତେ ଭୁଞ୍ଜ ଦେଲୁ ଗୋ[19] ଦୁରନ୍ତ, ଏ କଷ୍ଟରୁ ରଖିବେ[20] ରାଧିକା ପ୍ରାଣନାଥ[21]॥୨୭

---

୧ । ଖ. ପାପିଷ୍ଠ ପିଣ୍ଡ
ଙ. ମୋହୋର ପିଣ୍ଡ
ଘ. ଏ ମୋର ପାପିଷ୍ଠ ପିଣ୍ଡ
୨ । ଖ. ତୋହର ଅପାଦ ପଡ଼ୁ ମୋହର
ଗ. ତୋହୋର ପାଦଧୂଳି ପଡ଼ୁ ମୋ
ଘ-ତୋହୋର ଅପଦ ପଡ଼ୁ ଏ ମୋର
୩ । ଖ ଗ ଘ. ନ କହିବୁ
୪ । ଘ. ଆନନ୍ଦ ମୁଁ ହେଉଥାଇ
୫ । ଖ ଗ ଘ. କେଉଁଦିନ
୬ । ଗ. ସେ ଦିନ ସାର୍ଥକ
ଘ. ସାର୍ଥକ୍ୟ
୭ । ଗ. ଏ ମୋର ସରିର
ଘ. ମୋହୋର ଶରୀର
୮ । ଗ. ବାହୁଡ଼ିଲା
୯ । ଏତେ କହି କୂପରେ ପାଳିକୀଣ ଗଲ
୧୦ । ଗ କେ
୧୧ । ଗ. ଏତେ କହି କୂପରେ ଗୋ ପାଳିକୀଣ ଗଲ
ଘ. ଦ୍ଵାରବତୀ ଜୀର୍ଣ୍ଣ କୂପ ନିକଟେ ମିଳିଲା
୧୨ । ଖ. ବୋଲଇ
ଘ. ବୋଇଲା
୧୩ । ଗ. ଡାକଇ ପ୍ରାଣନାଥ ଏବେ ମୋ
୧୪ । ଗ. ପ୍ରାଣ ନ ହୁଅଇ
ଘ. କଥାରେ ନ ଗୁଡ଼ କଳେବର
୧୫ । ଗ ଘ. ସତ୍ୟଶାତ ବୋଲନ୍ତି ସେ
୧୬ । ଖ. ଏଥିରେ ନିଶ୍ଚଏ ପ୍ରାଣ ତେଜିବ ମାନିଣୀ
ଘ. ଏଥିରେ ନିଶ୍ଚଏ ପ୍ରାଣ ତେଜିବ ତରୁଣୀ
୧୭ । ଘ. ପୁରୁଷ ହତ୍ୟା ମାଗିକ
୧୮ । ଘ. ପୂର୍ବେ ମୁହିଁ ତୋତେ ନ ଥିଲି
୧୯ । ଖ. ଆଣି ଦେଲୁରେ
ଘ. ମୋତେ ଆଣି ଦେଲୁ ରୁ
୨୦ । ଗ. ଉଦ୍ଧରିବେ
ଘ. ଏଥୁ ଉଦ୍ଧରିବେ ସେ ରାଧିକା ପ୍ରାଣକାନ୍ତ

ଶୁଣି କର ସ୍ୱାବଶ୍ରୀ[୧] ନବଣ ହୋଇଲ, ଏମନ୍ତ ପ୍ରକାରେ ଚଳିଁ ବନ ସ୍ୱଶ୍ରଗଲ[୨]
ଅର୍ଜୁନକୁ ନ ଦେଖି ବକଳ ଭ୍ରାତମାନେ, ଚଞ୍ଚଳ ଲେଉଡ଼ୁଛନ୍ତି ବୁଲଣି[୩] କାନନେ ॥୨୮॥
କାହିଁ ଅର୍ଜୁନ ନ ଦେଖି[୪] କଷଣ ହୋଇଲେ, ଅର୍ଜୁନ କଥା ଶୁଣି ଦ୍ରୌପଦୀ ମୋହଗଲେ[୫] ଯେ
ଋଷଭାଇ ନ ଦେଖି ଯେ ହୁଅନ୍ତି ବିକଳ[୬], କୃଷ୍ଣଙ୍କୁ ଚିନ୍ତିଲେ[୭] ଯେ ଯୁଧିଷ୍ଠି ମହୀପାଳ ॥୨୯॥
ଗରୁଡ଼ ପୃଷ୍ଠରେ ବଜେଁ[୮] ପ୍ରଭୁ ଭଗବାନ, ଧର୍ମସୁତ ପାଦେ ଆସି[୯] କରନ୍ତି ଦ୍ରୁସନ
ଭୀମସେନ ନକୁଳ ଯେ ସହଦେବ ତିନ, ଶ୍ରୀକୃଷ୍ଣ ଚରଣେ ପଢ଼ି କରନ୍ତି ବନ୍ଦନ ॥୩୦॥
ଯୁଧିଷ୍ଠି ଜଣାଇଲେ[୧୦] ଶୁଣିବା ଦେବ ହରି, ମୃଗୟା ଅର୍ଥେ ଅର୍ଜୁନ କାନନେ ବିହରି[୧୧]
ଲେଉଡ଼ି ନ ପାଇଲୁ ଭ୍ରାତ କନ୍ଦକନ୍ତି[୧୨] ଭ୍ର, କି ଅବା ବନସ୍ତେ ତାଙ୍କୁ ପ୍ରମାଦ ପଡ଼ିଲା[୧୩] ॥୩୧॥
ସହଦେବ ବଦନକୁ ଚାହିଁ ଦାମୋଦର[୧୪], ଗୋପ୍ୟ ନ କରିବୁ[୧୫] ଏବେ କହ ମଣ୍ଡିବର
ସହଦେବ ଜଣାଇଲେ ଦେଖି[୧୬] ବାମକର, ଶୁଣ ପ୍ରଭୁ[୧୭] ଜଗନ୍ନାଥ ବ୍ରହ୍ମାଣ୍ଡ ଠାକୁର[୧୮] ॥୩୨॥
ପିଙ୍ଗଳା ପର୍ବତରେ ଯେ[୧୯] ଅର୍ଜୁନ ଠାକୁରେ, ଶୟନ ସେ କରିଥିଲେ ନିଦ୍ରାସୁଖ ଭରେ
ସ୍ୱାବଶ୍ରୀ ଚାହିଁରେ ଯେ[୨୦] ପ୍ରବେଶ ହୋଇଲ, ପିଙ୍ଗଳାକ୍ଷୀ ଦେବଙ୍କ ଦ୍ରୁସନ ପାଇ[୨୧] କଲ ॥୩୩॥

---

୧ । ଖ ଗ ଘ. ସ୍ୱାହ୍ୱବଶ୍ରୀ
୨ । ଖ. କେତେକ ଦିନେଁ ବନ ଗଲ
   ଘ. ଏହି ପ୍ରକାରେଣ ଚଳୁଂ କେତେ ଦିନ ଗଲ
୩ । ଖ ଘ. ପଥୀଣ
୪ । ଖ ଘ. ନ ଦେଖିଣ ତାଙ୍କୁ
୫ । ଖ. ଶୋକ କଲେ
   ଘ. ଦ୍ରୌପଦୀ ଶୋକ କଲେ
୬ । ଖ ଘ. ଗୃହ ପାଣ୍ଡବେ ଚନ୍ଦ୍ରିରେ ହୁଅନ୍ତି ଆକୁଳ
୭ । ଘ. ଚିନ୍ତା କଲେ
୮ । ଖ. ଗରୁଡ଼େ ବଜେ କରଣ
   ଘ. ଗରୁଡ଼େ ବଜେ କଲେ
୯ । ଖ ଘ. ଧର୍ମସୁତଙ୍କ ଚରଣେ
୧୦ । ଖ. ସୁଣ ହେ
   ଘ. ସୁଣିମା
୧୧ । ଖ. ଅର୍ଥରେ ଅର୍ଜୁନ ବନେ ଯାଇ କରି
   ଘ. ଅର୍ଥେ ଅର୍ଜୁନ ବନେ ବଜେ କରି
୧୨ । ଖ ଘ. ବନେ କେଉଁକଣ
୧୩ । ଘ. ବନସ୍ତେ ତାଙ୍କୁ ବିପତ୍ତି ପଡ଼ିଲା
୧୪ । ଘ. ବଦନ ଚାହିଁଲେ ଦାମୋଦର
୧୫ । ଖ ଘ: ଗୋପ୍ୟ ନ କରିଣ
୧୬ । ଖ. ଜଣାନ୍ତି ଅନାଇ
   ଘ. ଜଣାନ୍ତି ଯୋଡ଼ିଣ ବେନିକର
୧୭ । ଖ ଘ. ସୁଣିମା ହେ
୧୮ । ଖ ଘ. ଇଶ୍ୱର
୧୯ । ଖ. ପିଙ୍ଗଳ ପର୍ବତେ ଯେହୁ
   ଘ: ପିଙ୍ଗଳ ପର୍ବତରେ ସେ
୨୦ । ଖ. ଆସି ଚାହିଁ
   ଘ. ଚାହିଁ ଆସି
୨୧ । ଘଃ ଆସି

ତାହାଙ୍କୁ ଦେଖି ହୋଇଲେ[1] ମଦନେ କାତର, ତୋଳ ଶୁଆଇଲ ନେଇ ଆପଣା ଉଦର
କାଞ୍ଚିପୁରେ ଯାଇଣ ସେ[2] ପ୍ରବେଶ ହୋଇଲା, ବହୁତ ପ୍ରକାରେ ସେ ଯେ[3] ଭଜନ୍ତୁ କହିଲା[4] ॥୩୪॥
ସନମତ ନ କଲେ ସେ ଅର୍ଜ୍ଜୁନ[5] ଠାକୁରେ, ମାୟାଜାଲ ପକାଇଲା[6] ସେ ଗାଣ୍ଡି କୂପରେ
ବହୁତ କଷ୍ଟ କପଟ ଜାଣଇ ସୁନ୍ଦରୀ, ନିକୁମ୍ଭ ଦୈତ୍ୟ ସ୍ୱର୍ଗରୁ ଆଣିଅଛି[7] ହରି ॥୩୫॥
ତା ଭୁଲେ ପ୍ରୀତି କରାଇ ଆଣି ଧନଞ୍ଜୟେ[8], ନିକୁମ୍ଭ ଦୈତ୍ୟକୁ ଏବେ କରିବା ହେ[9] କ୍ଷୟ
ବିଳମ୍ବ ନ କର ପ୍ରଭୁ ବେଗେ ଯିବା ଚଳ[10], ଶୁଣି କରି ହରଷ ହସନ୍ତୁ ବନମାଳୀ ॥୩୬॥
ଦ୍ରୌପଦୀଙ୍କି ବହୁତ ପ୍ରବୋଧିଣ[11] କହିଲେ, ଭୀମସେନକୁ ଘେନି ଗରୁଡ଼େ ବିଜେ କଲେ
ପିଙ୍ଗଳ ପରବତେ ହୋଇଲେ ପରବେଶ[12], ଗରୁଡ଼ରୁ ଉତ୍ତୁରିଲେ[13] ଶ୍ରୀମ ହୃଷୀକେଶ ॥୩୭॥
ଆଜ୍ଞା ଦେଲେ ଗରୁଡ଼କୁ କାଞ୍ଚିପୁରେ[14] ଯାଅ, ପକ୍ଷିଘାତେ ଅସୁର ମାନଙ୍କୁ ଯେ[15] ଉଡ଼ାଅ
ଅର୍ଜ୍ଜୁନ ଯେ ଅଛି ଦ୍ୱାରାବତୀର ପୁରରେ[16], ତହିଁକି ପବନ ଆଉ ନ ଲାଗିବ ଖରେ[17] ॥୩୮॥

---

୧ । ଗ ଘ. ଅର୍ଜ୍ଜୁନଙ୍କୁ ଦେଖିକରି
୨ । ଘ. କାଞ୍ଚନଗ୍ରେ ନିଜପୁର
୩ । ଙ. ବାଳୀ
୪ । ଘ. ବହୁତ ପ୍ରକାରେ ବାଳ ଭଜଏ କହିଲା
୫ । ଘ. ସେ ଅର୍ଜ୍ଜୁନ
୬ । ଘ. ମାଣ୍ଡଳରେ ପକାଇ ଅଛୁ
୭ । ଖ. ସ୍ୱର୍ଗୁଂ ଆଣିଲ ତାକୁ
ଘ. ଦୈତ୍ୟ ତାକୁ ଅଣିଲା ସ୍ୱର୍ଗୁଂ ହରି
ଷ. ସ୍ୱର୍ଗୁଂ ଅଣିଲ ତାକୁ
୮ । ଙ. ତାର ଭୁଲେ ପ୍ରିତି କରି ଆଣିମା ଧନଞ୍ଜୟେ
ଘ. ତା ଭୁଲେ ପ୍ରୀତିକରି ଆଣିମା ଧନଞ୍ଜୟେ
୯ । ଙ. [illegible] କରିବା [illegible]
ଘ. ନିକୁମ୍ଭ ଅସୁରକୁ କରିବା ହେଉ କ୍ଷୟ
୧୦ । ଘ. ଯିବା ହେଉ ଚଳି
୧୧ । ଘ. ଦ୍ରୁପଦୀଙ୍କି ବହୁତ ସେ ପ୍ରବୋଧି
୧୨ । ଖ. ପର୍ବତେ ଯାଇଂ ହୋଇଲେ ପ୍ରବେଶ
ଘ. ପ୍ରବତେ
୧୩ । ଘ. ଗରୁଡ଼୍ ଉତ୍ତୁରିଲେ
୧୪ । ଗ. କାଞ୍ଚନଗ୍ର ଯାଅ
ଘ. ଗରୁଡ଼୍ ରୁ କାଞ୍ଚିପୁର
୧୫ । ଗ ଘ. ପକ୍ଷିବାତଘାତେ ଦୈତ୍ୟ ମାନଙ୍କୁ
୧୬ । ଗ. ରହିଅଛନ୍ତି ଦ୍ୱାରାବତୀ ପୁରେ
ଘ. ଅର୍ଜ୍ଜୁନର ଅଛନ୍ତି ଦ୍ୱାରାବତୀ
୧୭ । ଘ. ଧୀରେ

ଆବର ଯେ[1] ପୁରମାନ ଅସୁର ସଙ୍ଗତେ, ଉଡ଼ଯାଇ ବହୁ ଦୂରେ ପଡ଼ିବେ ବନସ୍ତେ

ଏମନ୍ତ କରି ଆସି[2] ଆମ୍ଭଙ୍କୁ ଜଣାଇବ, ସ୍ୱାସବନ୍ତ ପୁର[3] ତୁମ୍ଭେ କରିଥିବ ଠାବ ॥୩୯॥

ଶୁଣିଣ ସେ ଖଗେଶ୍ୱର[4] ନମସ୍କାର କଲେ, କାଞ୍ଚ ନଗ୍ରରେ ଯାଇଣ[5] ପ୍ରବେଶ ହୋଇଲେ

ସ୍ୱାସବନ୍ତ ପୁରର ଠାବ କଲେକ ସେ[6] ଯାଇ, ପକ୍ଷିବାତେ[7] କାଞ୍ଚନଗ୍ର ଦେଲେକ ଉଡ଼ାଇ ॥୪୦॥

ନଳୁମ୍ବର ସଙ୍ଗେ ଯେ[8] ସକଳ ଦୈତ୍ୟମାନେ, ଅଶ୍ୱ ଗଜ ସଙ୍ଗତେଣ ଉଡ଼ିଲେ ଗଗନେ

ସ୍ତ୍ରୀଶ ବୃଦ୍ଧ ବାଳକ ସଙ୍ଗତେ ଗଲେ ଉଡ଼ି, କେ ଶତେ କେ ପାଞ୍ଚଶ[9] ଯୋଜନେ ଯାଇ ପଡ଼ି[10] ॥୪୧

ବହୁତ ଦୈତ୍ୟ ତନ୍ତ୍ରିରେ ହୋଇଲେ ନିଧନ, ଆଉ କେତେ ତନ୍ଦ୍ରିରେ[11] ହୋଇଲେ ଅଚେତନ

ଶ୍ରୀକୃଷ୍ଣ ପାଶେ ଜଣାନ୍ତ ଯାଇ[12] ଖଗେଶ୍ୱର, ବିଜୟ କର ହେ ଦେବ ଏବେ କାଞ୍ଚପୁର ଯେ[13] ॥୪୨

---

୧ । ଘ. ଆବର

୨ । ଖ. ଆସିଣ

୩ । ଘ. ପୁର

୪ । ଖ ଘ. ଏମନ୍ତ ସୁଣି ଗରୁଡ

୫ । ଘ. କାଞ୍ଚ ନଗ୍ରେ ଗୁଣତେ ସେ

୬ । ଘ. ପୁର ତହିଁ ଠାବ କଲେ

୭ । ଘ, ପକ୍ଷି ଘାତେ

୮ । ଘ. ସଙ୍ଗତେ

୯ । ଘ. କେ ସତେ କେ ପଞ୍ଚାସ

୧୦ । 'ଗ' ପୋଥିରେ ୨୯ ପଦର ଶେଷପାଦ ଠାରୁ ୪୧ ପର୍ଯ୍ୟନ୍ତ ନାହିଁ

୧୧ । ଖ. ଆଉ କେତେ ମୋହରେ
ଗ. ଆହ୍ମମାନେ ତହିଁ
ଘ. ଆହ୍ମମାନେ ମୋହରେ

୧୨ । ଖ. ପାସରେ ସେ ଘଣାନ୍ତି

୧୩ । ଖ ବିଜୟ କରିବା ପ୍ରଭୁ କାଞ୍ଚନନ୍ଦପୁର
ଗ. କର ଦେବ କାଞ୍ଚନଦ୍ରପୁର

ଶୁଣି କରି ଶ୍ରୀକୃଷ୍ଣ ସ୍ୱାମୀକୁ ଘେନି ଚଳେ, କାଞ୍ଚି ନଗ୍ରରେ ଯାଇଣ[୧] ପ୍ରବେଶ ହୋଇଲେ

ଦ୍ୱାରିକାଙ୍କ ପୁରରେ ମିଳିଲେ ଶୀଘ୍ରେ[୨] ଯାଇ, ଦେଖିଣ ଦ୍ୱାରିକାଙ୍କ ଯେ ଦ୍ରସନି[୩] କରଇ ॥୪୩॥

ଶ୍ରୀକୃଷ୍ଣ ପଚାରନ୍ତି ଅର୍ଜୁନ କାହିଁ ଅଛି, ତାହାକୁ ଏଥିକ ଆଣ[୪] ଆଣରେ ମୃଗାକ୍ଷି

ଶୁଣି ଦ୍ୱାରିକାଙ୍କ ଯେ ଯୋଡ଼ଇ ବେନିକର[୫], ମୋହର କଥା ସ୍ୱାମି ତୋତେ କି[୬] ଅଗୋଚର॥୪୪॥

ଅନ୍ତର୍ଯାମି ଜାଣ ତୁମ୍ଭେ ଅନ୍ତର୍ଗତ କଥା, ଜାଣି ଆଜ୍ଞା ଦେଉ ପ୍ରଭୁ ମୋର[୭] ମନ ବ୍ୟଥା

ଶ୍ରୀକୃଷ୍ଣ ବୋଇଲେ ସତ୍ୟ କରିଅଛୁଁ[୮] ଆମ୍ଭେ, ଅର୍ଜୁନକୁ ଅବଶ୍ୟ ଯେ ବର[୯] ଦେବ ତୁମ୍ଭେ ॥୪୫॥

ଶୁଣି କରି ସୁଦର୍ଶ ଯେ[୧୦] କୂପର ନିକଟେ, ଆସ ବୋଲି ଡାକ ସେ[୧୧] ତେଲ୍ଲକ ଉତ୍କଟେ

ମନ୍ତ୍ରବଳେ କୂପରୁଂ ଅଇଲେ ପାର୍ଥବୀର. ଶ୍ରୀକୃଷ୍ଣ ଚରଣ ତଳେ କଲେ ନମସ୍କାର ॥୪୬॥

ସ୍ୱାମଙ୍କ ଚରଣେ ଯାଇ ପ୍ରଣାମ ସେ[୧୨] କଲେ, ଅଧୂର ଆସନ୍ତି ବୋଲି କରି ଜଣାଇଲେ[୧୩]

ନଗର ବାହାରେ[୧୪] ଗଡ଼ ଅଛି ଚାରି ଦ୍ୱାର, ପୂର୍ବ ଦ୍ୱାରେ ଆପଣେ ରହିଲେ ଚକ୍ରଧର ॥୪୭॥

---

୧ । ଖ. ନଗ୍ରେ ଜାଇଣ ପୁଣ
ଗ. ନଗ୍ରେ ଜାଇ
ଘ. କାଞ୍ଚନଗ୍ରେ ପୁଣ

୨ । ଖ. ପୁଣ
ଗ. ପୁରେ ପ୍ରବେଶ ହେଲେ
ଘ. ଦ୍ୱାରିକାଙ୍କ ପୁରେ ଯେ ମିଳିଲେ ଯେ

୩ । ଘ. କୃଷ୍ଣପାଦେ ଦ୍ୱାରିକାଙ୍କ ଦ୍ରସନ

୪ । ଖ. ତାଙ୍କୁ ବେଗେ କରଣରେ
ଗ. ଆଣ କରି
ଘ. ତାଙ୍କୁ ବେଗକରି ତୁମ୍ଭେ

୫ । ଖ. ଶୁଣିକରି ଦ୍ୱାରିକାଙ୍କ କରେ ଯୋଡ଼ିକର
ଘ. ଶୁଣିକରି ଦ୍ୱାରିକାଙ୍କ ଯୋଡ଼ି କରେ କର

୬ । ଖ. ତୋହୋ କଥା ମହାପ୍ରଭୁ ମୋତେ
ଘ. ମୋର କଥା ମହାପ୍ରଭୁ ମୋତେ

୭ । ଖ. ଶ୍ରୀମୁଖରେ ଆଗ୍ୟାଂ ହୋଉ ଗ୍ରଢ଼
ଘ. ଶ୍ରୀମୁଖେଣ ଆଗ୍ୟାଂ ହେଉ ଗ୍ରଢ଼

୮ । ଗ ଘ. କରୁଅଛୁ

୯ । ଖ. ବିବାହ ନିଷ୍ଟେ
ଘ. ନିଷ୍ଟେ ବିବାହ

୧୦ । ସୁଣି ତୋଷରେ ସୁଦର
ଘ. ସୁଣି ତୋଷେଣ ସୁଦର

୧୧ । ଘ. ଆସ ଆସ ବୋଲି ଡାକ

୧୨ । ଗ: ଚରଣ ତଳେ ପ୍ରଣାମ ପୁଣି
ଘ. ସେ ପ୍ରଣମ୍ୟ ପୁଣେ

୧୩ । ଗ ଘ. ଅସୁରେ ଆସନ୍ତି ବୋଲି ଗରୁଡ଼ କହିଲେ

୧୪ । ଗ. ନଗ୍ର ବାହାରେ
ଘ. ନଗ୍ର ବାହାରେଣ

ପଶ୍ଚିମ ଦ୍ୱାରେ ଗରୁଡ଼ ଓଗାଳନ୍ତେ[1] ଯାଇ, ଉତ୍ତର ଦ୍ୱାରରେ ଭୀମ ରହିଲେକ ଯାଇ[2]

ଅର୍ଜୁନ ଯେ ଆବୋରିଲେ[3] ଯାଇଣ ଦକ୍ଷିଣ, ଅସୁର ସୈନ୍ୟ ଆସନ୍ତି ହୋଇ ଅଗଣନ[4] ॥୪୮॥

କାହାର ଭୁଜ ଭଗ୍ନ କାହାର ପାଦ ଶ୍ରେଷ୍ଠା; କାହା କଟି ଲଡ଼ବଡ଼[5] କାହାରି ଫଟା

ଯେବଣ ଦ୍ୱାରରେ ଯେତୁ ମିଳୁଛନ୍ତି[6] ଯାଇ, ତହିଁ ମରୁଛନ୍ତି ଯେ ସମର କରୁ ନାହିଁ ॥୪୯॥[7]

ଦ୍ୱାରଦ୍ୱାରେ ମଡ଼ା ଯେ ପଡ଼ିଲେ ଅପ୍ରମାଣ[8], ନଦୀ ପରାଏ ବହଇ ତହିଁରେ ଯେ ଶ୍ରୋଣ[9]

ସେହି ରୂପେ[10] ସପତ ଦିବସ ତହିଁ ଗଲା[11], ରାକ୍ଷସଙ୍କ ସବୁ ସୈନ୍ୟ ଏହି ରୂପେ ମଲା[12] ॥୫୦॥

କଳମ୍ବ ସେ ଆସିଣ[13] ହୋଇଲା ପରବେଶ, ଉତ୍ତର ଦ୍ୱାରେ ପଶଇ କ୍ରୋଧେଣ[14] ରାକ୍ଷସ

ଦେଖିଣ ସେ[15] ଭୀମସେନ ବୃକ୍ଷେକ ଉପାଡ଼ି, ଦନୁଜ ରାଜା ଉପରେ ନେଇଣ ପକୁଡ଼ି[16] ॥୫୧॥

---

୧ । ଘ. ଉଗାଳିଲେ
୨ । ଗ. ଆପଣେ ଜାଇ
ଘ. ଉତର ଦ୍ୱାରେ ମାରୁତି ଆପଣେ ଜଗଇ
୩ ଖ. ଧନଞ୍ଜୟ ଓଗାଳିଲେ
ଗ. ଓଗାଳିଲେ
ଘ. ଧନଞ୍ଜୟ ଆବୋରିଲେ
୪ । ଗ. ଅଗଣଣ
ଘ. ଦୈତ୍ୟମାନେ ଆସନ୍ତି ହୋଇଣ ଅଗଣିଣ
୫ । ଗ. କାହାର କଟି ଅସଜ
୬ । ଗ. ଦ୍ୱାରେ ଯେ ବା ମିଳନ୍ତି
୭ । ଖ ଘ. କାହାର ଚରଣ ଭଗ୍ନ କାହାର ଶିର ଫାଟି
କାହାର ଭୁଜ ଅସଜ କାହାର କଟକଟି
ଯେଉଁ ଦ୍ୱାରେ ଯେତେମାନେ ମିଳୁଛନ୍ତି ଜାଇ
ତହିଁରେ ମରୁଛନ୍ତି ଶଂପସ୍ତ. କରୁଁନାହିଁ
୮ । ଘ ଘୋର ଦ୍ୱାରେଣ ପଡ଼ିଲେ ମଡ଼ା ଅପ୍ରମାଣ
୯ । ଖ ଗ ଘ. ବଡ଼ୀନଦୀ ପ୍ରାଏ ତହିଁ ବହୁଯାଏ ଶ୍ରୋଣ
୧୦ । ଗ ଘ. ଏହି ରୂପେ
୧୧ । ଖ ଗ ଘ. ବହିଗଲା
୧୨ । ଖ ଗ. ରାକ୍ଷସ ସୈନ୍ୟ ସବୁ ଗୋଟି ଏକ-ଠାରୁ ମଲା
ଘ. ରାଜାର ସୈନ୍ୟ ସବୁ ଗୋଟିକ ଠାରୁ ମଲା
୧୩ । ଘ. ଆସି ପୁଣ
୧୪ । ଖ ଘ. ଦ୍ୱାରବାଟେ ପଶଇ
ଗ ଦ୍ୱାରେ ଆସି ମିଳିଲା
୧୫ । ଖ. ଦେଖି ତାକୁ
୧୬ । ଖ ଗ. ଦୈତ୍ୟରାଜା ଉପରେ ସେ ନେଇଣ କସୁଡ଼ି
ଘ. ଦୈତ୍ୟରାଜା ଉପରେ ନେଇଣ କସୁଡ଼ି

ଅଙ୍ଗେ ପଡ଼ି ବୃକ୍ଷ ଚୂନା ହୋଇଣ ସେ ଗଲ[1], ପୁଣ ଭୀମସେନ ପଟଚେକ କଟହିଲ[2]
ଦେଖିଣ ଗରୁଡ଼ ଆଗେ[3] ଓଗାଳଲ ଯାଇ, ବେନ ଡ଼େଣା ଅଙ୍ଗରେ ପ୍ରହାର କଲେ[4] ନେଇ॥୫୨
ତେବେ ହେଲେ ଅସୁରର[5] କଛି ନୋହିଲା, ଧନ୍ୟ ଅସୁର ବୋଲ ବିଧାତା[6] ପ୍ରଶଂସିଲ
ବିଧାତାର[7] ବାଣୀ ଶୁଣି ଅର୍ଜୁନ ଅଇଲେ, ଦେବଶର[8] ବସାଇ ଦୈତ୍ୟକୁ ପ୍ରହାରଲେ ॥୫୩॥
ଅଙ୍ଗରେ ବାଜଣ ଶର[9] ହୋଇଗଲ ଧୂଳ[10], ପାଦଭରେ ଦୈତ୍ୟର[11] କମ୍ପିଲ ମହୀସ୍ଥଳ
ବିଧାଏକ ପଚ୍ଛୁଡ଼ିଲେ[12] ପବନର ସୁତ, ଖଗେଶ୍ୱର ଧାଇଁଣ[13] ମାଇଲେ ପାଦଘାତ ॥୫୪॥
ଅର୍ଜୁନ ଶରକୁ ତାହାର ନାହିଁ ଭଏ[14], ଶୂନ୍ୟେ ଥାଇ ଦେଖନ୍ତି ଆନନ୍ଦେ[15] ଦେବତାଏ
ବେଲୁଂ ବେଳ ସମର ବଢିଲା ମହାତ୍ରାସ[16], ତହିଁ ବେଳ ପ୍ରବେଶ ହୋଇଲେ ହୃଷୀକେଶ[17]॥୫୫॥

---

୧ । ଖ ଗ ଘ. ଦୈତ୍ୟ ଅଙ୍ଗେ ବାଜି ବୃକ୍ଷ ଚୂର୍ଣ୍ଣ ହୋଇଗଲ
୨ । ଘ. ପଟଚେ କଟ୍ହଲ
୩ । ଗ. "ଆଗେ" ନାହିଁ
ଘ. ଖଗେଶ୍ୱର ଦେଖିକର
୪ । ଖ. ଦୈତ୍ୟ ଅଙ୍ଗେ ବେନିବୃକ୍ଷ ପ୍ରହାରଲେ ନେଇ
ଘ. ଦୈତ୍ୟ ଅଙ୍ଗେ ବେନ ଡ଼େଣା ପ୍ରହାରଲେ ନେଇ
୫ । ଖ. ତେବେ ହେ ଦୈତ୍ୟରାଜାର
ଗ. ତେବେହେ ଅସୁରର
ଘ. ତେବେ ଦୈତ୍ୟ ରାଜାର
୬ । ଘ. ଧନ୍ୟ ଧନ୍ୟ ଦୈତ୍ୟ ବୋଲି ଧାତା
୭ । ଗ. ଧାତା
ଘ. ବିଧତାଙ୍କ
୮ । କ ଗ. ଦେବଶର
୯ । ଖ ଅଙ୍ଗେ ପଡ଼ୀ ଶସ୍ତ୍ରମାନ
ଗ. ଅଙ୍ଗେ ବାଜିରେ
ଘ. ଅଙ୍ଗେ ପଡି ସର ମାନେ ହୋଇଲେକ

୧୦ । ଘ. ଅଙ୍ଗେ ପଡି ସର୍ ମାନେ ହୋଇ-ଲେକ ଧୂଳି
୧୧ । ଖ. ପାଦେତ ଘାତ
ଘ. ଦୈତ୍ୟ ପାଦ ଘାତରେ
୧୨ । ଖ. ପ୍ରହାରଲେ
ଘ. ବିଧାଏ ପଚ୍ଛୁଡିଲେ ସେ
୧୩ । ଗ. ଖଗେନ୍ଦ୍ରରେ ଧାଇ
ଘ. ଝମଙ୍କ
୧୪ । ଖ. ଧନୁର୍ଦ୍ଧିସ୍ତ ନାରିକକୁ ନାସ୍ତି ତାର ଭଏ
ଘ. ଧନର୍ଦ୍ଧିସ୍ତ
୧୫ । ଘ. ସୁନ୍ୟେ ଥାଇ ଆନନ୍ଦେ ଦେଖନ୍ତି
୧୬ । ଗ. ବେଳୁବେଲ ବଢିଲା ଅସୁରର ସାହାସ
ଘ. ବେଳୁବେଲ ଅସୁରର ବଢୀଲ ସାହାସ
୧୭ । ଘ. ବେଲୁଂ ବେଲୁଂ ଅସୁର ବଢ଼ୀଲ ସାହାସ
ତହିଁଧର ପ୍ରବେସ ହୋଇଲେ ପିତବାସ

ଅସୁର ଉପରକୁ ମାଇଲେ[୧] ଭୁଜ ତୋଳି, ଧାଇଁ ଯାଇ ଚକ୍ରକୁ ଧଇଲା ମହାବଳୀ[୨]
ଛଡ଼ାଇ ନେବାକୁ[୩] ଚକ୍ର ତାହାର ଯେ[୪] ମନ, ଜାଣି ଅତି ଆଣ୍ଟେ ଯେ[୫] ଧଇଲେ ଭଗବାନ ॥୫୬॥
ଗରୁଡ଼ ଦେଖି ଦଇତ୍ୟର ବେନଭୁଜ ଧରି, ଭୀମସେନ କେଶଧରି ପଛକୁ ଓଟାରି
ଅର୍ଜୁନ ଶର ବାଛି ପେଷିଲେ ମର୍ମସ୍ଥାନ[୬], ତେବେ[୭] ଚକ୍ର ନେଇ ନ ପାରିଲେ ଭଗବାନ ॥୫୭॥
ଶୀଳଚକ୍ର[୮] ବିଧାତା ପବନ କରେ ଦେଲେ, ଅର୍ଜ୍ଜୁନର କରେ ଦିଅ ବୋଲିଣ ବୋଇଲେ[୯]
କଟିଭାଗେ ତାହାର ଯେ ପ୍ରହାରିବ ଶର[୧୦], ଶୁଣି କରି ଅତି ବେଗେ ଅଇଲେ ସମୀର ଯେ[୧୧] ॥୫୮॥
ବିଧାତାର ଆଜ୍ଞା ଯେ ଅର୍ଜୁନ କର୍ଣ୍ଣେ[୧୨] କହି, ଶୀଳଚକ୍ର ତାହାଙ୍କ କରରେ ଦେଲେ[୧୩] ନେଇ
ଚକ୍ର ଧରି କଟି ଭାଗେ ମାଇଲେ ଅର୍ଜୁନ, ବେନି ଖଣ୍ଡ ହୋଇଲା ସେ ଅସୁର[୧୪] ଗଜନ ॥୫୯॥
ପ୍ରାଣ ଯେନ ଶୀଳଚକ୍ର ପାତାଳେ ପଶିଲା, ମୃତ୍ୟୁପିଣ୍ଡ[୧୫] ବେନିଖଣ୍ଡ ଭୂମିରେ ପଡ଼ିଲା[୧୬]
ଚକ୍ର ଧରି ଚକ୍ରଧର[୧୭] ଆନନ୍ଦ ହୋଇଲେ, ଅର୍ଜ୍ଜୁନର[୧୮] ଶିରେ ଦେବେ ପୁଷ୍ପ[୧୯] ବୃଷ୍ଟି କଲେ ॥୬୦॥

---

୧ । ଖ. ଦଇତ୍ୟର ଉପରକୁ ମାରନ୍ତେ
ଗ. ଅସୁର ଉପରକୁଁ ମାରନ୍ତି
ଘ. ଦଇତ୍ୟ ଉପରକୁ ମାରନ୍ତେ ଭୁଜ ତୋଳି
୨ । ଧାଇଁ ନକୁମ୍ଭ ଚକ୍ର ଧଇଲା ଆଗୋଳି
ଘ. ଧାଇଁଣ ନକୁମ୍ଭ ଚକ୍ର ଧଇଲା ଆଗୋଳି
୩ । ଖ. ନେବାକୁ
୪ । ଖ. ବଡ
ଗ ଘ. ତାର ବଡ଼
୫ । ଖ ଗ ଘ. ଜାଣିକରି ଆଣ୍ଟେଣ
୬ । ଖ. ପେସନ୍ତି ମର୍ମଥାନ
ଘ. ପେସନ୍ତି ମର୍ମସ୍ଥାନ
୭ । ଖ ଗ. ତେବେ ହେ
୮ । ଗ. ବ୍ରହ୍ମା
୯ । ଖ. ଧନଞ୍ଜୟ କରେ ଦାଅ ବିଧାତା ଆଜ୍ଞା ଦେଲେ
ଗ. ଅର୍ଜୁନ କରେ ଦିଅ ବୋଲି ଆଜ୍ଞା ଦେଲେ
ଘ. ଧନଞ୍ଜୟ କରେ ଦିଅ ବୋଲି ଆଜ୍ଞା ଦେଲେ
୧୦ । ଘ. କଟୀତଟେ ତାହାର ପ୍ରହାର ବରବର
୧୧ । ଗ. 'କ' ପୋଥିରେ ୫୮ ପଦର ପାଠ ନାହିଁ
୧୨ । ଖ. ଆସି ଅର୍ଜ୍ଜୁନଙ୍କୁ
ଗ. ଆପେ
ଘ. ବିଧାତାଙ୍କ ଆଜ୍ଞା ଆସି ଅର୍ଜୁନଙ୍କୁ କହି
୧୩ । ଖ. ତାଙ୍କ କରେ ସମର୍ପିଲା ନେଇ
ଘ. ତାଙ୍କ କରେ ସମର୍ପିଲେ ନେଇ
୧୪ । ଖ ଗ ଘ. ନକୁମ୍ଭ
୧୫ । ଘ. ଦଇତ୍ୟପିଣ୍ଡ
୧୬ । ଗ. ବସିଲା
୧୭ । ଘ. ଚକ୍ରଧରି ଚକ୍ରଧର ଆନନ୍ଦ ହୋଇଲେ
୧୮ । ଖ ଗ ଘ. ଅର୍ଜ୍ଜୁନ
୧୯ । ଖ ଗ ଘ. କୁସୁମ

ପାର୍ଥଙ୍କୁ ସେ ଆଲିଙ୍ଗନ କଲେ ଲବଗ୍ରାହୀ[1], ଦ୍ୱାରବତୀ ସତ୍ୟ କଥା ତାଙ୍କ ଆଗେ କହି

ଦ୍ୱାରବତୀ ପୁରେ ପରବେଶ ପାଇ ହେଲେ[2] ପାଣ୍ଡବଙ୍କୁ ଆଣିମାକୁ ଗରୁଡ଼ ସେ ଗଲେ[3] ॥୭୧॥

ଯୁଧିଷ୍ଠିରଙ୍କି ଗରୁଡ଼ ସେ କଲେ ଦରଶନ[4], ମଣାଇଁ କହିଲେ ତାଙ୍କୁ ସକଳ ବଧାନ

ଯୁଧିଷ୍ଠିର ସହଦେବ ସେ ନକୁଳ ଦ୍ରୌପଦୀ[5], ଆବର ସଙ୍ଗତରେ[6] ଯେତେଣ ସବପଥ ॥୭୨॥

କାଞ୍ଚନଗ୍ରେ ପାଇ ସେ ହୋଇଲେ ପରବେଶ[7], ଅର୍ଜ୍ଜୁନଙ୍କୁ ଶ୍ରୀକୃଷ୍ଣ କରନ୍ତି ବରବେଶ[8]

ଦେଖିଣ ସମସ୍ତ ଋଷି ବେଦ ଧ୍ୱନି[9] କଲେ, ଦ୍ୱାରବତୀକ ସୁବେଶ[10] କରିଣ ଆଣିଲେ ॥୭୩॥

ଗନ୍ଧର୍ବ ବଧି ବଧାନେ[11] ବନ୍ଧ[12] ବଡ଼ି ଲାଜ, କାଞ୍ଚନଗ୍ର ଅର୍ଜ୍ଜୁନ ପାଇଲ ସଉରୁକ[13]

ଋଷିମାନେ ଫଳମୂଳ ଭକ୍ଷି ଶାନ୍ତ ହେଲେ[14], ପାଣ୍ଡବ ବାସ କରିଣ ତହିଁରେ[15] ରହିଲେ ॥୭୪॥

ଅର୍ଜ୍ଜୁନର ଦ୍ୱାରବତୀ[16] ବହୁତ ପୀରତି, ଦଦଧି ବନୋଦେ ସେ ବଞ୍ଚିଲେ[17] ଦ୍ୱାବାସ୍ତି

---

୧ । ଘ. ପାର୍ଥଙ୍କୁ ଆଲିଙ୍ଗନ କଲେକ ଲବଗ୍ରାହ

୨ । ଖ ଘ. ଯାଇ ପ୍ରବେଶ ହୋଇଲେ
ଗ. ପ୍ରବେଶ ହୋଇଲେ

୩ । ଖ ଗ ଘ. ପେଷିଲେ

୪ । ଗ. ଯୁଧିଷ୍ଠିରଙ୍କି ଗରୁଡ଼ କଲେ ଦରଶନ
ଘ. ଯୁଧିଷ୍ଠିରଙ୍କ ଗରୁଡ଼ କଲେକ ଦରଶନ

୫ । ଖ ଗ. ଦ୍ରୌପଦୀ
ଘ. ଯୁଧିଷ୍ଠିର ସହଦେବ ନକୁଳ ଦ୍ରୁପଦୀ

୬ । ଖ ଗ. ସଙ୍ଗତେଣ

୭ । ଗ. ପ୍ରବେଶ
ଘ. ବେଗେ ଯାଇ ହୋଇଲେ ପ୍ରବେଶ

୮ । ଗ. ବରବେଶ

୯ । ଗ. ଦେଖିଣ ସବୁ ଋଷି ବେଦଧ୍ୱନି
ଘ. ଦେଖିକରି ଋଷିମାନେ ବେଦଧ୍ୱନି

୧୦ । ଘ. ଦ୍ୱାରବତୀ କନ୍ୟାବେଶ

୧୧ । ଖ ଘ. ବଧିରେ ତହିଁ
ଘ. ବଧାନରେ

୧୨ । ଗ. ବବାହ

୧୩ । ଘ. ପାଇଲେ ସଉରୁକ

୧୪ । ଖ. ପାନେ ଶ୍ୟାନ୍ତ କଲେ
ଗ. ଫଳ ଭୋଜନେ ଶାନ୍ତ ହେଲେ
ଘ. ପାନେ ଶାନ୍ତ କଲେ

୧୫ । ଘ. ସେ କଟକରେ ନର୍ତ୍ତିଲେ

୧୬ । ଘ. ଅର୍ଜ୍ଜୁନ ଦ୍ୱାରବତୀର

୧୭ । ଖ. ବନରେ ସେ ରହିଲେ
ଗ. ବନୋଦେ ବଞ୍ଚିଲେ
ଘ. ବନୋଦେ ସେ ବଞ୍ଚିଲେ

ଶ୍ରୀକୃଷ୍ଣ ମେଲାଣି ହୋଇ ଦ୍ୱାରକାକୁ[1] ଗଲେ, ପାଣ୍ଡବେ ଯେ ଚତୁର୍ମାସ ତହିଁରେ ବସ୍ତିଲେ[2] ॥୭୫॥

ଋଷିମାନେ ସମସ୍ତେ ଅଛନ୍ତି ସଙ୍ଗତରେ[3], କୃଷ୍ଣଲୀଳା ଗାୟନ କରନ୍ତି ନିରନ୍ତରେ[4]

ସେହି କଥାକୁ ସୁମରି ବିଶ୍ୱମ୍ଭର ମନ[5], ବିଚିତ୍ର ଭାରତ ଏଣୁ କରଇ ଲେଖନ[6] ॥୭୬॥

୧ । ପ. ଦ୍ୱାରକାକୁ

୨ । ପ. ଚତୁର୍ମାସ୍ୟ ପାଣ୍ଡବେ ଯେ ନଗ୍ରେ ରହିଲେ

୩ । ପ. ରହିଛନ୍ତି ତାହାଙ୍କ ସଙ୍ଗର

୪ । ଖ. ଶ୍ରୀକୃଷ୍ଣ ଲୀଳା ଗାୟନ ଆନନ୍ଦ ମନର
ପ. ଶ୍ରୀକୃଷ୍ଣ ଲୀଳା ଗାୟନେ ଆନନ୍ଦ ମନର

୫ । ପ. ସେହିକଥା ନିରନ୍ତର କରି ନିରନ୍ତର
ବିଚିତ୍ର ଭାରଥ କହେ ଦୀନ ବିଶ୍ୱମ୍ଭର

୬ । ଖ. ସେହିକଥା ସୁମରଣା କରି ନିରନ୍ତର
ବିଚିତ୍ର ଭାରତ କହେ ଦୀନ ବିଶ୍ୱମ୍ଭର

## ପଞ୍ଚଦଶ ଛାନ୍ଦ

### ରାଗ—କାଫି[1]

ବରଷା ହୋଇଲା ଶେଷ          ଶରଦ ହେଲା ପ୍ରବେଶ
ନିର୍ମଳ ଦିଶିଲେ ଦଶମାନେ[2]
ପଙ୍କ ହୋଇଲା[3] ନିଃଶେଷ          ଶୁଭ୍ରଗ ଦିଶେ ଆକାଶ
ନିର୍ଜଳା ଭଇଲେ ମେଘମାନେ
ମାନ୍ଦ[4] ଗର୍ଜନେ, କଲେ ପ୍ରାଣ ସଞ୍ଜୀବନ ଚାତକ ସଦନେ[5]
ଦେଖି ହରଷ ହୋଇଲେ ପଦ୍ମକୁଳ ହେ[6]
ତାରାମାନେ ଚଉପାଶେ[7] ଦିଶନ୍ତି ଗହନ ହେ ॥୧॥

---

୧ । ପ. ରାଗ କାମି

୨ । ଖ ଗ ପ. ଦଗମାନେ

୩ । ପ. ପବନ ହୋଇଲେ

୪ । ଖ ଗ. ରହେ
ପ. ପନମାନ୍ଦ ରହେ ଗର୍ଜନ ହେ

୫ । ଖ. କଲ ପ୍ରକାସ ପଠନ କି ଉଜ୍ଜ୍ୱଳ ହେ
ଗ. କଲ ପ୍ରାଣ ସଜନ ଯେ ଉଜଳ ହେ
ପ. କଲ ପ୍ରାଣ ସଜନ ଯେ ଉଜଳ ହେ
ପ. କଲ ପ୍ରାଣ ସଜନାଙ୍କି ଯେ ପ୍ରଜ୍ୱଳ ହେ

୬ । ଗ. ଦେଖି ବିକସିତ କୁମୁଦନ କୂଳ
ପ. ଦେଖି ବିକାସିତ କୁମୁଦନ କୁଳ ହେ

ତେଜ ମାନସରୋବର ଆଇଲେ ହଂସ ନିକର
ଅବସରେ ମିଳି ଧ୍ୱନି କଲେ
ନିର୍ମଳ ହୋଇଲେ ଜଳ ଫୁଟିଲେ ଚହିଁ କମଳ
ଦେଖି ଭ୍ରମର ମିଳି ଚୁମ୍ବ ଦେଲେ[1] ସେ
ନବ ସୁନ୍ଦର[2], ଚହିଁ ଫୁଟିଲେ ସେ କୁମୁଦ[3] କହ୍ଲାର ହେ
ଚଉପାଶେ[4] ବେଢ଼ିଛନ୍ତି ଇନ୍ଦୀବର ହେ
ଜନମନ କରୁଛନ୍ତି ସୁଖକର[5] ହେ ॥୨॥
ଏ ଋତୁ[6] ଦେଖିଣ ବନେ ହରଷ ଧର୍ମ ନନ୍ଦନେ
ସଙ୍ଗେ ଘେନି ଦ୍ରୁପଦ ଦୁହିତା[7]
ପୁଣି ଅନାଇଁ ଗଗନ କହନ୍ତି ପ୍ରିୟ ବଚନ
ଦେଖ ସଖି ଏବେ ଚନ୍ଦ୍ରର ଶୋଭିତାରେ[8]
ପ୍ରାଣ ସଜନି, ଦେଖ କି ସୁନ୍ଦର ଦିଶଇ ରଜନୀରେ[9]
ତାରକୁଳକୁ ମଣ୍ଡୁଛି କର ସେନରେ
ଏଣୁ ନିର୍ମଳ ହୋଇଛି[10] ଏ ଅବସରେ ॥୩॥

---

୧ । ଖ. ନିର୍ମଳ କମଳ ନେତ୍ରେ ଜହ୍ନ କୀ କମଳ
ଅନୁକୂଳ ମଞ୍ଜି କେଳି ଚହିଁ କଲେ ହେ
ଗ. ଭ୍ରମର ମାତେ ଚୁମ୍ବ ଦେଲେ
ଘ. ଅନୁକୂଳ ମଞ୍ଜି କେଳି ଚହିଁଲେ
୨ । ଖ. ନବ ସୁନ୍ଦର
ଗ. ନବ ସୁନ୍ଦର
୩ । ଖ. ଚହିଁ ବହ୍ନିଲେଣ ଫୁଟିଲେ
ଗ. ବହ୍ନିଲେଣ ଫୁଟିଲ
ଘ. ଚହ୍ନିଂ ବହ୍ନିଲେଣ ଫୁଟିଲେ କହ୍ଲାର ହେ
୪ । ଖ ଗ ଘ. ଚଉପାସେ
୫ । ଖ. ସୁଖକର
ଗ. ସୁଖକର
ଘ. ଜନମ କରୁଛନ୍ତି ସୁଖକର ହେ
୬ । କ. ଶରତ
୭ । ଖ. ଦୁହିତା
ଗ. ଦୁହିତା
ଘ. ଦ୍ରୁପଦ ଦୁହିତା
୮ । ଖ. ସୁଧାବୃଷ୍ଟରେ
ଗ. ଅକ୍ଷର ନଷ୍ଟ ହୋଇଥିବାରୁ ନାହିଁ
ଘ. ଦେଖ ସଖି ଏ ସୁଧା ବର୍ଷଣରେ
୯ । ଗ, ଅକ୍ଷର ନଷ୍ଟ ଯୋଗୁଁ ଏ ପଦଟି ନାହିଁ
ଘ. କି ସୁନ୍ଦର ଦିସନ୍ତି ରଜନୀରେ
୧୦ । ଗ. ଶୁଦ୍ଧନିର୍ମଳ କରୁଛି
ଘ. ଏଣେ ନିର୍ମଳ କରୁଛି

ଅନା ଅନା ନାଗ୍ୱବର — ନଗ୍ନ ମାନଙ୍କର ଶିର

ଝଣୁଛନ୍ତି କେମନ୍ତ ପ୍ଳଳନରେ[1]

ଏହା ଜଦେ ମୋର ମନ — ସଖି ତୋହୋର ଜଘନ

ଅତ ସୂକ୍ଷ୍ମ[2] ମୋ ନେତ୍ର ମଣ୍ଡନରେ

ଚମ୍ପା[3] ବରନା, ଚଣ୍ଡି ଭ୍ରମର ବକାଶ ପ୍ରିଏ[4] ଅନାରେ[5]

ତୋର ହାସ ପ୍ରାଏ[6] ଝଣଇ[7] ଶୋଭନାରେ

ମୋତେ ହସି ବାରେ[8] କୋଳ କରୁ କନାରେ ॥୩॥

ଶୁଣି ନୃପତି କୁମାରୀ — ଗାଢ଼େ ଆଲିଙ୍ଗନ କରି

ବଦନ ମଣ୍ଡଳେ ଚୁମ୍ବ ଦାନ[9]

ନାନା ରୂପେ କଉତୁକେ — ରତି ବଞ୍ଚିଲେ ଉଚ୍ଛୁକେ[10]

ଏହି ରୂପେ ନିଶ୍ଚିନ୍ତ ହୋଇଲେ[11] ବନେ ହେ[12]

ପାର୍ଥ[13] ବିବେକ, ଚତୁର୍ମାସ୍ୟା ଅନ୍ତେଣ ରଦ ଆଲେକ[14] ହେ

ଭାଗବନ୍ତଙ୍କ ପ୍ରବୋଧି ସେ[15] ଅନେକ ହେ

ନିଷ୍ଟ୍ରେଣ ରହିଥାଅ ଏ କଟକ ଗୋ[16] ॥୪॥

---

୧ । କ. ପୁଲଣ
୨ । ଖ. 'କରେ' (ଅଧିକ)
ଘ. ଅତ ସୁଖକର ମୋର
୩ । ଘ. ହେମ
୪ । ଖ. ଦର୍ଶୀ ଭ୍ରମର ବକାସେ ଅନା
ଘ. ଦର୍ଶୀ ଭ୍ରରୁ ବକାସେ
୫ । ଗ. ଏ ପାଦ ଦୁଇଟି ଅକ୍ଷର ନଷ୍ଟ ହୋଇ ଥିବାରୁ ନାହିଁ
୬ । ଗ ପ୍ରିଏ
୭ । ଘ. ଦସନ୍ତୀ
୮ । ଗ. 'ବାରେ' ପାଠ ନାହିଁ
୯ । ଖ. ବଦନ ଚୁମ୍ବିଲେ ଚିବୁକ ଦାନେ
ଗ ଘ. ବଦନ ମଣ୍ଡିଲେ ଚୁମ୍ବଦାନେ
୧୦ । ଘ. ନାନା କଉତୁକ କରି ବଞ୍ଚିଲେ ଦେବୀ ଶାଳଣ
୧୧ । ଘ. ହୋଇଣ
୧୨ । ଗ. ଅକ୍ଷର ନଷ୍ଟ ହୋଇ ଏ ପାଦଟି ନାହିଁ
୧୩ । ଖ ଗ ଘ- ପୁଣ
୧୪ । ଖ ଗ, ଚତୁର୍ମାସ ଅନ୍ତେ ହୋଇଲେ ଉତ୍ସୁକ ହେ
ଘ. ଚତୁର୍ମାଶ ଅନ୍ତେ ହୋଇଲେ ଉତ୍ସୁକ ହେ
୧୫ । ଖ ଗ. ପ୍ରବୋଧିଣ
ଘ. ପ୍ରବୋଧିଲ ଜନେକ ହେ
୧୬ । ଖ. କଟେକ ହେ

ସାର କଷ୍ଟେ ବନବାସ　　ଏଥୁ ହୋଇବ[୧] ପ୍ରବେଶ
ନାନା ତୀର୍ଥ ସ୍ନାହାନ କରିବ[୨] ଗୋ
ଶୁଣି ଶୋକ କଲ ବାଳ　　ଅର୍ଜ୍ଜୁନ ବୋଧନ୍ତି ମିଳ[୩]
ଶ୍ରୀବବତୀ ବୋଲେ ତୁମ୍ଭ ସଙ୍ଗେ ଯିବି ହେ[୪]
ପ୍ରାଣ ନାୟକ, କେମନ୍ତେ ବଞ୍ଚିବ ମୋ ପ୍ରାଣ ହେଉ ଧିକ[୭] ହେ
ତୁମ୍ଭେ ଅଟ ପରା ଧାର୍ମିକ ବିବେକ ହେ[୫]
ମୋର ଗର୍ଭ ଦେନ ମାସଟି ରସିକ ହେ[୬] ॥୭॥
ବହୁତ ପ୍ରବୋଧ କରି[୮]　　ଅର୍ଜ୍ଜୁନ ଚଳନ୍ତି ବାହାର
ଧର୍ମସୁତ ପାଶେ ପରବେଶ
ପଞ୍ଚ ପାଣ୍ଡବ ଦ୍ରୌପଦୀ[୯]　　ସଙ୍ଗେ ଘେନ ଧର୍ମ ପତି
ବନେ[୧୦] ଗମିଲେ ତେଜିଣ ସେ କାଞ୍ଚୀଦେଶ ହେ[୧୧]
ଶୁଣ ସୁଜନେ, ଚଳନ୍ତି ବହୁ ଦୂର ଜଲେ ସେ[୧୨] ଗମନ ହେ[୧୩]
ତୀର୍ଥ ଦେଖିଲେ ତହିଁ କରନ୍ତି ସ୍ନାହାନ[୧୪] ହେ
କାର୍ଣ୍ଣି ଫଳ ମୂଳ କରନ୍ତି ଭୋଜନ ହେ[୧୫] ॥୭॥

---

୧। ଗ. ସନ୍ତୋଷେ ବନବାସ ଏଥୁ
ହୋଇବୁଂ
ଗ ଘ. ପାରକେଶ ବନବାସ ଏଥୁ ହୋଇବୁ
୨। ଖ. ସ୍ନାନ ଯେ କରିବୁଂ
ଗ. କରିବୁ
ଘ. ନାନା ତୀର୍ଥେ ସ୍ନାନ ଜେ କରିବ
୩। ଗ. ପ୍ରବୋଧ କର
ଗ ଘ. ପ୍ରବୋଧେ
୪। ଗ. ଯିବୁ ହେ
୫। ଗ. ତୁମ୍ଭ ବନୁ ଛ ଧଇବ
ଏକାଧ୍ୟ କହେ
ଖ. ତୁମ୍ଭ ବନୁ ଧଇବ ନାଏକ ହେ
୬। ଗ. ମୋର ଗର୍ଭ ଦେନ ମାସଟି
ରସିକ ହେ
୭। ଗ. କେଉଁ ମୁହଁବ ମୋ
ପ୍ରାଣ ହେଉ ଧିକ ହେ
ଘ. ପ୍ରାଣ ନାୟକ ମୋର
ଗର୍ଭେ ଦେନ ମାସଟୀ ରସିକ ହେ
୮। ଘ. ବହୁତ ପ୍ରବୋଧି କରି
୯। ଘ. ପଞ୍ଚ ପାଣ୍ଡବେ ଦ୍ରୁପତୀ
୧୦। ଖ. ପାଠ ନାହିଁ
ଗ. ବନେ
୧୧। ଗ. କାଞ୍ଚୀଦେଶ ତେଜିଣ ହେ
ଘ. ବନେ ପସୀଲେ ତେଜୀ କାଞ୍ଚି ଦେଶ ହେ
୧୨। ଖ. ଶୁଣ ସଜନ ବହୁ ଦୂର ସେହୁ କରନ୍ତି
ଘ. ବହୁଦୂର କରନ୍ତୀ ସେ ଗମନ ହେ
୧୩। ଖ. ଏହି ପାଦଟିର ପାଠ ନାହିଁ
୧୪। ଖ. ସ୍ନାନ
ଗ. ତୀର୍ଥ ଦେଖିଣ କରନ୍ତି
ସ୍ନାହାନ ହେ
ଘ. ଧାଉଟି ନାହିଁ
୧୫। ଘ. କରନ୍ତୀ ସେ ଭୋଜନ ହେ

ଘେନେ ଶ୍ରୀହରି[୧] ଭେଟିଲେ          ବଶିଷ୍ଠ ଋଷି ଦେଖିଲେ[୨]

ଶୁଣ ଏବେ ଅର୍ଜ୍ଜୁନ[୩] ଚରିତ ହେ

ଋକ୍ଷ କପି ମନ୍ତ୍ରୀବର          ଶୁଷେଣ ନାମ ତାହାର[୪]

ରାମଚନ୍ଦ୍ର ରଖିଥିଲେ ଏ ପର୍ବତ ହେ[୫]

ଧର୍ମନନ୍ଦନ, ଏଥିରେ କରିବା[୬] ତାହାକୁ ରାଜନ[୭] ହେ

ଶୁଣି ଶୁଷେଣ ସାରସ କଲେ ମନ ହେ

ନାମ ଧରିଣ ତେଜିଲେ ସେ[୮] ଜୀବନ ହେ ॥୮॥

କେତେଦିନେ ଦାଶରଥି          ପ୍ରବେଶ ହୋଇଲେ ଆସି[୯]

ଏଥି[୧୦] ରାଜ ଅଭିଷେକ ବିଧି[୧୧] ଘେନ

ରାମଚନ୍ଦ୍ର ଆଜ୍ଞା ଦେଲେ          ଶୁଷେଣ ଆଣ ବୋଇଲେ[୧୨]

ଶୁଣିକରି ଗଲେ ସେ[୧୩] ଚାରିବେଦ ହେ

ତହିଁ ମିଳିଲେ, ହନୁ ଦେଖନ୍ତି ଶୁଷେଣ ନାଶ ଗଲେ ହେ

ଶିର ଖୋଲି[୧୪] ତାହାକୁ ଶୁଆଇଲେ ହେ

ମଲ୍ଲୀ କୁସୁମ ଗୁଣ୍ଡାଏ ଘୋଡ଼ାଇଲେ ହେ ॥୯॥

---

୧ । ଘ. ଘେନ ଶ୍ରୀଗିରି
୨ । ଘ. କହିଲେ
୩ । ଗ. ଅପୂର୍ବ
ଘ. ସୁନ୍ଦର
୪ । ଘ. ତାଙ୍କର
୫ । ଘ. ଏ ପ୍ରବତେ ହେ
୬ । ଖ. ଏଥି କରିବାକୁ
୭ । ଘ. ଏଥି କରିବାକୁ ଘେନ ହେ
୮ । ଖ ଗ ଘ. ରାମନାମ ଧରି ତେଜିଲେ
୯ । ଖ ଘ. ଏଥି
୧୦ । ଖ ଗ ଘ. ଏହି ପାଠ ନାହିଁ
୧୧ । ଗ. ପାଠ ନାହିଁ
ଘ. ସର୍ବ
୧୨ । ସୁଷେଣଙ୍କୁ ଆଣ ଭଲେ
ଘ. ସୁଷେଣଙ୍କୁ ଆଣ ବୋଲେ
୧୩ । ଖ. ତହୁଂ ଗଲେ
ଗ. ଗଲେ ତହିଁ
ଘ. ଗଲେ ତହୁଂ
୧୪ । ଗ ଘ: 'ତହିଁ' ଅଧିକ

ବରୁଣଙ୍କୁ ଗଣପତି ଧରିକରି[1] କରୁଛଲେ ଧରଣୀ ସେ
ଜଳପତି ଜ୍ଞାନ ଚେତଣ ପିଣ୍ଡରୁ ଶୋଇଲେ[2] ମଣ୍ଡିତଳରେ ସେ
ଦେଖି ପ୍ରଦ୍ୟୁମ୍ନ[3] ବୀର, ସଙ୍ଗେ ସବ ସହୋଦର[4] ସେ
କଲେ ଅସଂଖ୍ୟ ଛନ୍ଦି ସମର ହେ
ତାହା ସହଣ କାର୍ତ୍ତିକେଶ୍ୱର ସେ ॥୧୩॥

ବ୍ରହ୍ମଶର[5] ଯେନି[6] ନମେଷ ମାତକେ[7] ସବୁର ପ୍ରାଣ ହରିଲେ[8]
ଦେଖିଣ ନାରଦ ଦ୍ୱାରକା[9] ମିଳଣ ରାମକୃଷ୍ଣଙ୍କୁ କହିଲେ ସେ
ଦେବ ସବକୁମର, ରଣେ ମାଇଲେ କାର୍ତ୍ତିକେଶ୍ୱର ହେ
ବେଳଖଣ୍ଡ ହୋଇଅଛନ୍ତି ବୀର[10] ସେ
ଜନ୍ୟ ସେନଯାନ୍ତ ନଜ ପୁର ସେ ॥୧୪॥

ଶୁଣି ରାମକୃଷ୍ଣ ପାଚବଂଶ ସନ୍ୟ ଘେନିଣ ସେ[11] ସଙ୍ଗତରେ
ମହାକ୍ରୋଧ ହୋଇ କାର୍ତ୍ତିକେଶ୍ୱରଙ୍କୁ ବେଢ଼ିଲେ ଆସି ସତ୍ୱରେ[12] ସେ
ଶଙ୍କରଷଣ ଧାଇଁ, ହଳ ମୂଷଳ କରେ ବୁଲାଇ ସେ
ଶିବଗଣ ମାରନ୍ତି ଗୋଡ଼ାଇ ସେ
ମହାମତ୍ତ[13] ବିଶ୍ୱମୂର୍ତ୍ତି[14] ହୋଇ ସେ ॥୧୫॥

---

୧। ଘ. କରେ ଧରି
୨। ଘ. ଚେତଙ୍କଲେ ପିଣ୍ଡରୁ ସୋଇଲେ
୩। ଖ. ପଦ୍ଯୁନ
ଘ. ପଦ୍ଯୁନ
୪। ଗ ଗ ଘ. ଘେନିଣ ସବ ସୋଦର
୫। ଗ. ବ୍ରହ୍ମସନ
ଘ. ବ୍ରହ୍ମସ୍ତ୍ର
୬। ଖ ଘ. ପେସି
୭। ଘ. ନମୀଷ ମାତ୍ରକେ
୮। ଖ. ଚେତକଲେ
ଘ ହାଣଲେ
୯। ଘ. ଦେଖି ନାରଦ ଦ୍ୱାରକା
୧୦। ଖ ଘ. ହୋଇଛନ୍ତି ବୀର ହେ
୧୧। ଖ ସେନାକରି
ଘ. ସେନାଗଲେ
୧୨। ଗ. ବହୁତ ସମର କଲେ ସେ
ଘ. ଅତି ସତ୍ୱରେ
୧୩। ଗ. ମହାମତ
୧୪। ଖ ବିସ୍ମୂର୍ତ୍ତି

ଗଣେଶ ଦେଖିଣ ଓଗାଳନ୍ତେ ଆଣି ମୂଷଳେ[1] ଘମେ ପିଟିଲେ
ସେହିକ୍ଷଣି ହଳ ପ୍ରହାର କରନ୍ତେ ଗଣେଶ ମହୀ ଲୋଟିଲେ ସେ[2]
ଦେଖି କାର୍ତ୍ତିକେଶ୍ୱର, କୃଷ୍ଣ ସଙ୍ଗେ କରନ୍ତି[3] ସମର ଯେ
କୋପ କଲେ ଦେଖି ପୀତାମ୍ବର ସେ
ପେଷିଲେକ ନାରାୟଣ ଶର[4] ସେ ॥୧୬॥

କାର୍ତ୍ତିକ ହୃଦରେ ପଡ଼ିଣ ବେଗରେ ବାହାର ହୋଇଲା ଶର[5]
ଗର୍ଜନ କରଣ ପ୍ରାଣ ହାରି ତଳେ ପଡ଼ିଲେ କାର୍ତ୍ତିକେଶ୍ୱର ସେ
ଯେତେ ସାରଥି ଥିଲେ, ବଳରାମ ସମସ୍ତ ମାଇଲେ ସେ
କନ୍ୟା ଛଡ଼ାଇ ଚହ୍ମଂ ଆଣିଲେ[6] ସେ
ଦେଖି ନାରଦ ଚହ୍ମଂ ଚଳିଲେ[7] ସେ ॥୧୭

ପାତାଳ ପୁରରେ ବ୍ରହ୍ମଜ୍ଞାନ ସାଧୁ ଅଛନ୍ତି ସେ ତ୍ରିପୁରାରି[8]
ମୃଗସେନ ଜୟସେନ ବେନି ଦୈତ୍ୟ ତାଙ୍କୁ ଛନ୍ତି ଅନୁସରି ସେ[9]
ପରବେଶ ନାରଦ, ଜଠ ଶିବ ସରିଲା ସମ୍ପଦ ସେ
ରାମକୃଷ୍ଣ କଲେ ତୋଡ଼େ[10] ବାଦ ସେ
କାର୍ତ୍ତିକକୁ କଲେ ଶରଛେଦ[11] ସେ ॥୧୮॥

---

୧ । ଗ. ଦେଖି ଓଗାଳିଲେ ଦେଖିଣ
ଘ. ଓଗାଳନ୍ତି ଆଣି ମୂଷଳ
୨ । ଗ. ସେହିକ୍ଷଣି ହଳ ବୃନ୍ଦାଇ ପିଟିଲେ
ଗଣେଷ ଗ୍ୟାଂନ ହାରିଲେ
୩ । ଗ. କଲେକ
୪ । ଖ ନାରାୟଣାସର
ଘ. ନାରାଏଣା ସର
୫ । ଖ ସର
୬ । ଗ. ସେନା ଅପିଲେ
ଘ. ସେନାଲେ
୭ । ଖ ଘ. ଚଞ୍ଚିଲୁ ଗଲେ
୮ । ଖ ଘ. ପାତାଳପୁରେ ଈଶ୍ୱର
ବ୍ରହ୍ମଜ୍ଞାନ ସାଧୁଛନ୍ତି ତପ କରି
୯ । ଖ ଘ ସେବା କରି
୧୦ । ଖ ତୋଡ଼େ
ଘ. ତୋଡ଼େ କଲେ
୧୧ । ଖ ଘ. ଶିରଛେଦ

ବହୁଣ ନନ୍ଦନ[1] ବାଳକାଳୁ ତୁମ୍ଭେ[2] କାର୍ତ୍ତିକ କଲ ବରଣ
ରାମଙ୍କ ପୁନ ବିବାହ ହେଉଥିଲା କାର୍ତ୍ତିକେ ଏହା ଜାଣିଣ[3] ସେ
କୃଷ୍ଣ ପୁତ୍ରକୁ ମାରି, କନ୍ୟା ଆଣିଥିଲେ ନିଜ ପୁରୀ ସେ

ମିଳିଲେ ରାମ ସାରଙ୍ଗଧାରୀ ସେ
କନ୍ୟା ନେଲେ କାର୍ତ୍ତିକ ନବୀନ ସେ[4] ॥୧୯॥

ଶୁଣି ମହାଦେବ ମହାକ୍ରୋଧ ହୋଇ ବେଣ ଦୈତ୍ୟକୁ ପୁଚ୍ଛିଲେ
କସ କାର୍ଯ୍ୟେ ତୁମ୍ଭେ ତପ କରୁଅଛ କହ ବୋଲିଣ ବୋଇଲେ[5] ସେ
ଶୁଣି ବେଣ ଅସୁର, ଶିରେ ପୋଡ଼ିଲେକ ବେଣ[6] କର ସେ

ଜଣାଇଲେ ଶୁଣିମା ଶଙ୍କର ସେ
ଏହା କାରଣେ ତପ ଆମ୍ଭର ସେ ॥୨୦॥

ରାମକୃଷ୍ଣ ଆମ୍ଭ ବଂଶ ନାଶ କଲେ ଜିଣିମ୍ଭ ତାହାଙ୍କୁ[7] ରଣେ
କ୍ରୋଧେ ଏହି[8] ବର ଦେଇଣ ଈଶ୍ୱର ପେଷିଲେ ତାଙ୍କୁ[9] ଗହଣେ ସେ
ବୃଷଭେ ବସେ କଲେ, ଦେଖି ନାରଦ ଆଗରେ ଗଲେ ସେ

ମହାଦେବ ଭୂଷଣେ ମିଳିଲେ ସେ
ରାମକୃଷ୍ଣଙ୍କୁ ସେ ଓଗାଳିଲେ ସେ ॥୨୧॥[10]

---

୧। ଖ. କୁମାର
୨। ଘ. ବାଳକାଳୁ ତୁମ୍ଭେ
୩। ଖ ଘ. ଶୁଣିଣ
୪। ଖ ପେଷଣରେ ବୃନ୍ଦ ମାରି ହେ
୫। ଖ ଘ. ବୋଲି ଆରମ୍ଭ ହେଲେ
୬। ଘ. ପୋଡ଼ିଲ ବେଣ
୭। ଘ. ମାରିବୁ ତାହାକୁ
୮। ଖ ଘ. ଶୁଣି ସେହି
୯। ଘ. ପେଷା ତାଙ୍କୁ
୧୦। ଙ. "ରାମକୃଷ୍ଣକୁ ସେ ଓଗାଳିଲେ ସେ"
[ଅଧିକ ପାଠ]

ଦେଖି ରାମକୃଷ୍ଣ ସୈନ୍ୟ ପଛ କରି କରନ୍ତି ଅସଂଖ୍ୟ ରଣ[1]
ମହାଦେବ କ୍ରୋଧ କରିଣ କୃଷ୍ଣଙ୍କୁ[2] ପ୍ରହାରୁ ଅଛନ୍ତି ବାଣ ସେ
ପଦ୍ମଲୋଚନ ହରି, ତାଙ୍କ ଶର[3] ଦୂରରୁ[4] ନିବାରି ସେ

ବାହୁଛନ୍ତି ଶାର୍ଙ୍ଗ ଶର[5] ଧରି ସେ
ଜଣା ନ ଗଲା[6] ଏହା ଶବ୍ଦ ସେ[7] ॥୨୨॥

ଦେବ ଶରରେ ପ୍ରତିଶର କରନ୍ତି ଲୁପ୍ତେ କମ୍ପଇ[8] ଧରଣୀ
ମହାଘୋର ନାଦ କରିଣ ସମର କରୁଛନ୍ତି[9] ହଳପାଣି ସେ
ବେନି ଅସ୍ତ୍ର ସାରି, ଧନୁ ଧରି କରନ୍ତି ସମର ସେ

ହେଲେ ନିବାରନ୍ତି ନାନାସ୍ତ୍ର ସେ
ବେହିଂ ବେନି କୋପ[10] ମହାଘୋର ସେ ॥୨୩॥

ନାରଦ ଦେଖିଣ ନୃତ୍ୟ କରୁଛନ୍ତି ଲଗୁ ଲଗ୍ନ ବୋଲି ଡାକ
ଅଣୀ ସହସ୍ର କଳ ଧୋକେଡ଼ି କାଖେ ସେ ମୁନି ଅଛନ୍ତି ଜାକି ହେ
କଳ ଛିମ୍ପି ସେ ହାତ, କଳ ଦେଖି ଉଲ୍ଲସଇ ଗ୍ରୀବ ସେ

କଳ ଲଗାଇ ଅଛନ୍ତି ମାତି ସେ[11]
ତାଙ୍କୁ ବିଶ୍ୱମ୍ଭର ମାଗେ ଭକ୍ତି ସେ[12] ॥୨୪॥

---

୧ । ଘ କରନ୍ତେ ଅପକ୍ଷ
୨ । ଘ. କରିଣ ଶ୍ରୀକୃଷ୍ଣ
୩ । ଉ. ସର
୪ । ଉ. ଦୂରରୁ
୫ । ଖ ଘ. ଦେବଶର
୬ । ଉ. ଗିଣା
୭ । ଘ 'ଧାଇଁଟି' ନାହିଁ
୮ । ଖ ଶରେଣରେ ପ୍ରତିଶର କରିବାରେ କମ୍ପ ଅଛଇ
ଗ. ଦେବଶରରେ ପ୍ରତି ସର କରନ୍ତି କମ୍ପ ଅଛଇ
ଘ. ଶରେ ଶରେ ପ୍ରତି ଶର କରିବାରେ କମ୍ପ ଅଛନ୍ତି
୯ । ଘ. କରୁ ଅଛନ୍ତି
୧୦ । ଖ ଘ. ଯୁଦ୍ଧ
୧୧ । ଉ ଘ. 'ପାଠ' ନାହିଁ
୧୨ । ଖ. ପୋଥିରେ '୨୪' ପଦଟି ନାହିଁ

## ଦ୍ୱାବିଂଶ ଛାନ୍ଦ

### ରାଗ—ଶ୍ରେଖୀ

ହରିହର କଲେ ରଣ　　　　କାହାରି ନୋହିଲା ଜଣ[1]

ଧନୁଶର ପକାଇଣ କୋପେ ଈଶ୍ୱର

କୃଷ୍ଣଙ୍କୁ ଧଇଲେ ଉଠି　　　　ଜାଣି ହରି ଧନୁ[2] ଗୁଛି

ଭଡ଼ାଭଡ଼ି ହୋଇଲେ ମାଲଙ୍କ[3] ଆକାର[4]

ପୃଥ୍ୱୀଦେବୀ ଆକୁଳ ହେଲେ[5]

ବେଦଜନ ପଢ଼ିଲେ ମରିବ ବୋଇଲେ[6] ॥୧॥

ଶୁଣି ହରି ଅନାଇଲେ　　　　ବୃଷଭ ପାଶେ ମିଳିଲେ

ପୃଷ୍ଠେ ବଜେ କଲେ[7] ଯାଇ ସେ ହରିହର

ଚଣ୍ଡି ପରେ ଜଡ଼ାଜଡ଼ି　　　　ଭିଡ଼ାଭିଡ଼ି ଗଡ଼ାଗଡ଼ି

ପଡ଼ାପଡ଼ି ଧରାଧରି[8] ଘୋର ସମର

ବେଦ ଦେବଙ୍କର ସମର[9]

କେ ଅବା ଲେଖି ପାରିବ ସଖି[10] କାହାର ॥୨॥

---

୧ । ଘ. ନୋହିଲେକ ହାରି ଜଣ
୨ । ଗ. ହେଲେ
୩ । ଖ ଘ: ମଲଙ୍କ
୪ । ଗ. ଛନ୍ଦାଂଶେ
୫ । ଘ. ହେଲେ
୬ । ଘ. ବୋଇଲେ
୭ । ଖ ଗ. ପୃଷ୍ଠ ବନ୍ଧାଣଲେ
　ଘ. ପୃଷ୍ଠ ବନ୍ଧାଣଲେ ଚଢ଼ି
୮ । ଗ. ଭିଡ଼ାଭିଡ଼ି ଧରାଧରି ପଡ଼ାପଡ଼ି ମାରାମାରି ଶୀହରଣ
　ଘ. ଧରାଧରି ଭିଡ଼ାଭିଡ଼ି ଚଢ଼ାଚଢ଼ି ଗଡ଼ାଗଡ଼ି ମରାମରି ସିଂହରଡ଼ି
୯ । ପ୍ରହାର
　ଘ. ସେ ବେଳା ଦେବଙ୍କ ପ୍ରହାର
୧୦ । ଘ　ପକ୍ଷ

ଦେଖି ଗରୁଡ଼ ଧାଇଁଲେ  ଦୂରକୁ ଗୋଡ଼ାଇ ନେଲେ[1]
ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ[2] ନିଜ କନ୍ଧେ ବସାଇ
ଜମ୍ବୁସେନ ଦୈତ୍ୟ ବୀର  କନ୍ଧେ ଭିଡ଼ି ଧନୁଶର[3]
କରେ ଧରି କୃଷ୍ଣ ଆଗେ[4] ଉଭାହେଲ ଯାଇ[5]
କୃଷ୍ଣ ତାଙ୍କୁ କଲେ ସମର[6]
ଯାଦବ ବଂଶକୁ[7] ମାରୁଛନ୍ତି ଶମ୍ବର[8] ॥୩॥

ମୃଗସେନ ସଙ୍ଗେ ରାମ  ଯୁଦ୍ଧକରି ଘୋର ତମ
ଲଙ୍ଗଳ ବୁଲାଇ[9] କରି କୋପେ ଧାଇଁଲେ
ପିଟିଲେ[10] ଅସୁର ଶିରେ  ମୃଗସେନ ଧରି[11] କରେ
ରାମ କରରୁ ହଳ ଛଡ଼ାଇ ନେଲେ[12]
ସେହି ହଳ କୋପେ[13] ବୁଲାଇ
ବଳରାମଙ୍କର ଶିରେ[14] ପ୍ରହାରେ ନେଇ ॥୪॥

ମୋହେ ପଡ଼ିଲେକ ରାମ  ଦେଖି ଦୈତ୍ୟ[15] ଅତି ତମ
ହଳ ବୁଲାଇଣ ଚହୁଂ କୋପେ ଧାଇଁଲା
ପିଟିଲା କୃଷ୍ଣ ଉପରେ  ମୋହୋ ଗଲେ ଅବନୀରେ
ଦେଖିକରି ଜମ୍ବୁସେନ ଆନନ୍ଦ ହେଲା
ଶିବ ଯନ୍ତ୍ରଂ[16] ବଳ ମାଇଲେ
ମନେନ୍ଦୀ[17] କନ୍ୟାକୁ ଚହୁଂ ଛଡ଼ାଇ ନେଲେ ॥୫॥

---

୧। ଖ ଗ ଘ. ଦୂରକୁ ଘଞ୍ଚାଇ ନେଲେ
୨। ଖ ଗ ଘ. ଶ୍ରୀକୃଷ୍ଣଙ୍କୁ ତୋଳି
୩। ଗ ଘ. କରେ ଧରି ଧନୁଶର
୪। ଖ ଗ ଘ. ଶ୍ରୀକୃଷ୍ଣ ଚନ୍ଦ୍ର ଙ୍କୁ ଦେଖି
୫। ଗ. ଉଭାହୋଇଲେ ସେ
ଘ. ଉଭାଇଲେ ଯାଇ
୬। ଘ. କୃଷ୍ଣଙ୍କୁ କରନ୍ତି ସମର
୭। ଗ. ଗଣଙ୍କୁ
ଘ. ଯାଦବଙ୍କୁ
୮। ଖ. ଶଙ୍କର
୯। ଘ. ଲଙ୍ଗଳ ବୁଲାଇ
୧୦। ଖ ଘ. ପିଟିଲେ
୧୧। ଖ ଘ ଧରେ
୧୨। ଘ. ରାମ କରୁ ହଳ ଛଡ଼ାଇ ନେଲାଗଲେ
୧୩। ଖ ଘ. କୋପରେ
୧୪। ଘ. ବଳରାମଙ୍କ ଶିରରେ
୧୫। ଖ. ତମ
ଘ. କରି
୧୬। ଗ. ଯନ୍ତ
୧୭। ଗ. ନଳଦଙ୍କୁ

ତା ଦେଖି ନାରଦ ଗଲେ — କଦମ୍ବ ବନେ ମିଳିଲେ
ପାଣ୍ଡବଙ୍କୁ କହିଲେ ସକଳ ଚରିତ
ଭୀମ ଅର୍ଜୁନ ନକୁଳ — ସଙ୍ଗେ ଘେନି[1] ଧର୍ମରାଜ
ଅତ୍ୟନ୍ତ କୋପରେ ସେ ଧାଇଁଲେ ତ୍ୱରିତ[2]
ସେ ନାରଦ କଢ଼ାଇ ନେଲେ
ପାଣ୍ଡବେ ଶଙ୍କର ଆଗେ ଯାଇ ମିଳିଲେ[3] ॥୬॥

ଭୀମସେନ ମୃଗସେନ[4] — ନକୁଳଙ୍କୁ ଜୟସେନ[5]
ଶଙ୍କର ସଙ୍ଗେ ଅର୍ଜୁନ କଲେ ସମର
ଭୀମଙ୍କୁ ସେ ମୃଗସେନ — ମାଡ଼ ବସିଲା ବଦନ
ଶତସିଂହଙ୍କୁ[6] ସୁମନ୍ତ ପାଣ୍ଡବ ବୀର[7]
ଅସୁରଙ୍କୁ ବଳେ ଧଇଲେ
ଗଧାଏ ମସ୍ତକେ ତାର[9] ପ୍ରହାର କଲେ ॥୭॥

ମୃଗସେନ ମୁଣ୍ଡ ଚୂର[10] — ପ୍ରାଣ ଛାଡ଼ିଲା ତାହାର[11]
ବେକଳପାଦ[12] ଧରି ବୁଲାଇଲେ ପାବେନ
କରି ଅତି କୋପମନ — ପିଟିଲେ ସେ ଜୟସେନ
କ୍ଷଣେ ଘୂମାଇଁ ଅସୁର ପଡ଼େ ଅବଶ
ଗୋଇଠାଏ ହୃଦେ ମାଇଲେ[13]
ରକତ ଉଦ୍‌ଗାର[14] ଜୟସେନହିଁ ମଲେ ॥୮॥

---

୧ । ଙ. ସଙ୍ଗେ... ଘେନି
୨ । ଘ. ତ୍ୱରିତେ
୩ । ଙ. ପାଣ୍ଡବେ ... ଶଙ୍କରଙ୍କୁ ଭେଟାଇଲେ
ଖ. ପାଣ୍ଡବେ ସମରେ ଶିବଙ୍କୁ ଭେଟାଇଲେ
ଘ. ପାଣ୍ଡବେ ହରଙ୍କୁ ଭେଟାଇଲେ
୪ । ଗ. ଜମ୍ବୁସେନ
୫ । ଗ. ମୃଗସେନ
୬ । ଙ. ସତଶିଂହଙ୍କୁ
ଘ. ଦେଶଙ୍କୁ
୭ । ଖ ଗ. ବାହୁ କୁମର
ଘ. ମୁମରଣ ବାତ କୁମର
୮ । କ୍ଷ ଗ ଘ. ବୃକୋଦର
୯ । ଘ. ତାର ମସ୍ତକେ
୧୦ । ଗ ଘ. ଚୂର୍ଣ୍ଣି
୧୧ । ଖ ଘ. ତାର ପାଦ
୧୨ । ଘ. ହୃଦେ ମାଇଲେ
୧୩ । ଘ. ... ପାଦେ ପ୍ରହାର କଲେ
୧୪ । ଙ. ରକ୍ତ ଉଦ୍‌ଗାରଣ

ଦେଖି ବାସବ ନନ୍ଦନ          କଲେ ଅତି କୋପମନ
ମନ ଭେଦ ନାରାଚ[1] ଧନୁରେ ବସାଇ
ଆଜ୍ଞା ଦେଲେ ପାଞ୍ଚ ଶର[2]          ଶମ୍ବରଙ୍କୁ[3] ବେଗେ ମାର
ଭେଦକୁ ଅନେକ ଶ୍ରେମତେଜ ନାଶେତ ହୋଇ
ଶୁଣି ଶର ହରଷ ହଟେ[4]
କଦମ୍ବ କୁସୁମ ପ୍ରାଏ ଭେଦ ଭୂଷଟେ[5] ॥୯॥
ଧନୁ ଗୁଣ୍ଡଣ ଶମ୍ବର          ମୋଦେ ପଞ୍ଚ ଅବସର
ନାରଦ ଦେଖିଣ କଇଳାସକୁ[6] ଗଲେ
ପାର୍ବତୀ ଆଗେ କହିଲେ          ଶୁଣି ଦେବୀ କୋପ କଲେ
ଦୁର୍ଗା ରୂପେ ସିଂହରେ ସେ[7] ବିଜୟେ କଲେ
ସହସ୍ରେକ ଭୁଜ ତାଙ୍କର
ପଞ୍ଚଶତ ଧନୁଶର ଧରିଣ କର[8] ॥୧୦॥
ସଙ୍ଗେ କୋଟିଏ[9] କଙ୍କାଳୀ          ଲକ୍ଷେ ସେବଲେ[10] ବେତାଳୀ
ଭଇରବୀ ବରମ୍ଭୀ[11] ଅସଂଖ୍ୟ ସଇନ
ପାଣ୍ଡବଙ୍କୁ ଓଗାଳଲେ          ଦେବୀଏ ଗର୍ଜନ କଲେ
ଗଦାଧର ତାଙ୍କୁ ମାରୁଛନ୍ତି ଧାବେନ୍ଦ[12]
ଧନୁଶରେ ଧରି ଅର୍ଜୁନ
ଦୁର୍ଗା ସମୀପେ[13] ପ୍ରବେଶ ହେଲେ ବହନ ॥୧୧॥

---

୧। ଘ. ନେତ୍ର ନାରାଚ
୨। ଗ. ଶର
୩। ଖ. ଶମ୍ବରଙ୍କୁ
୪। ଗ. ହଶଟେ
ଘ. ଶୁଣି ଶର ହର ଶତରେ
୫। ଖ. ଭେଦଲ ଶିରେ
ଗ ଘ. ଭେଦଲ ଶିରେ
୬। ଖ. କଇଲାସକୁ
ଗ. କଇଲାସକୁ
୭। ଝ. ସିଂହ ପୃଷ୍ଠେ
ଗ. ସିଂହ ପରେ
ଘ. ଦୁର୍ଗା ରୂପେ ସିଂହ ପୃଷ୍ଠେ
୮। ଗ. ପଞ୍ଚଶତ ଧନୁ ଧରି ଅଷ୍ଟହସ୍ତ କରେ
୯। ଖ ଗ ଘ. କୋଟିଏ
୧୦। ଖ ଗ ଘ. ଲକ୍ଷେକ ସେନା
୧୧। ଗ. [illegible]
ଘ. [illegible]
୧୨। ଖ ଗ ଧାବନ
୧୩। ଘ. ଦୁର୍ଗା ସମୀପେ

ପାର୍ଥ ଦେଖି କୋପମନ          ପେଷନ୍ତେ ଶର ବହନ
ରହ ରହ ବୋଲଣ ପାର୍ବତୀ ଡାକଲେ

ଶିଷ୍ୟ-ପୁଷ୍ପ ହୋଇ କର          କମା ମାଗତ ପ୍ରହାର
ଚଦ୍ୟାନଭ କଲ୍ୟାଣ[1] ଭୁ ହୁଅ ବୋଇଲେ
ଶୁଣି ପାର୍ଥ ଧନୁ ଥୁଇଲେ
ପାର୍ବତୀଙ୍କ ପାଦେ ଯାଇ ପ୍ରଣମ କଲେ ॥୧୨॥

ଦୁର୍ଗା ସିଂହରୁ ଉତରି[2]          [3]ଅର୍ଜୁନକୁ କୋଳେ ଧରି[3]
ଶାନ୍ତ ମୂର୍ତ୍ତି[4] ହୋଇଲେ ସେ ଦେବୀ ସର୍ବାଣୀ

ସ୍ତମ ସମସ୍ତ[5] ରହିଲେ[6]          ଦେଖି ଏ ଅନ୍ତର ହେଲେ
ଅର୍ଜୁନକୁ ସ୍ନେହେ[7] ଦେବୀ ବଚନ[7] ଭଣି
ଦେଖ ଦରଦର ସମର[8]
ମୋହେ ପଡ଼ିଛନ୍ତି ବୀର ଆଦ୍ୟ କୁମର[9] ॥୧୩॥

ବ୍ରହ୍ମାଙ୍କୁ କରନ୍ତୁ[10] ଧ୍ୟାନ          ଆସନ୍ତୁ ଚତୁରାନନ
ଶୁଣି ବଧାତାକୁ ଲକ୍ଷ୍ୟେ କଲେ ଅର୍ଜୁନ[11]

ବ୍ରହ୍ମା ଦେବ ପୁରନ୍ଦର[12]          ଯମ ପବନ କୁବେର
ଅନଳ[13] ସଙ୍ଗତେ ସର୍ବେ ଆସି ବହନ[14]
ଦେଖି କର ଯୋଡ଼ି ପାଣ୍ଡବେ
ବ୍ରହ୍ମାଙ୍କୁ ପ୍ରଣମ କଲେ ଆନନ୍ଦ ଭାବେ ॥୧୪॥

---

୧ । ଖ. କରଣ
୨ । ଘ. ଦୁଗା ସୀଂହରୁ ଉତୁରି
୩ । ଗ. ଡୋଳୀ ଧରି
୪ । ଖ. ପ୍ୟାନ୍ତ ମୂର୍ତ୍ତି
   ଗ. ଶାନ୍ତ ମୂର୍ତ୍ତ
   ଘ. ଶାନ୍ତୀ ମୂର୍ତ୍ତି
୫ । ଖ ଗ ଘ. ଯମରେ
୬ । ଗ. କହିଲେ
୭ । ଖ ଗ ଘ. ବୁଦ୍ଧିକର ପାର୍ବତୀ
୮ । ଘ ସମରେ
୯ । ଘ. କୁମରେ
୧୦ । ଖ. କରରୁ
୧୧ । ଖ ଘ. ପାର୍ଶ୍ୱବ
୧୨ । ଖ ପୁରନ୍ଦର
୧୩ । ଖ. ଅନଳ
୧୪ । ଖ ଘ. ଅଛନ୍ତି ଦେବ

ଯୋଡ଼କର କର ବେନି    ଜଣାଇଲେ ଫାଲଗୁନ
ଦଶରଥ[୧] ବେନକୁଳ ଅଛନ୍ତି ପଡ଼ି
ହେ ଦେବ ହୁଅ ପ୍ରସନ୍ନ    ଏହାଙ୍କୁ କର ଚେତନ[୨]
କେବଳ ମାତ୍ରକ ବେନି ଅସୁର ଗୁଡ଼
ଶୁଣି ବ୍ରହ୍ମା ଯମକୁ ଘେନ
ଛିନ୍ନ ପିଣ୍ଡମାନ ଏକ କରନ୍ତି ବେନି[୩] ॥୧୫॥
ହୃଦସ୍ଥ ଶର[୪] କାଢ଼ନ୍ତି    ପ୍ରାଣ[୫] ମୁଖରୁ ଫୁଙ୍କନ୍ତି
ଜଡ଼ିତ ଅଉଷଧି[୬] କରନ୍ତି ଲେପନ
ଇନ୍ଦ୍ର ସୁଧା ବୃଷ୍ଟି କଲେ    ଉଠ ବ୍ରହ୍ମା ଡାକ ଦେଲେ[୭]
ଅଜାବେ ଜୀବନ ନେଇଁ[୮] ଦେଲେ ଶମନ
ଗନ୍ଧର୍ବେ ଦୁନ୍ଦୁଭି ବାଜିଲେ[୯]
ସମସ୍ତେ ହେ ଏକାବେଳେ ଉଠି ବସିଲେ[୧୦] ॥୧୬॥
ଆନନ୍ଦାନନ୍ଦ କୁମର    ପ୍ରଦ୍ୟୁମ୍ନ ସର୍ବ[୧୧] ସୋଦର
ବରୁଣ ଆଦି କରିଣ ସର୍ବ[୧୨] ସଇନ
ଗଣେଶ କାର୍ତ୍ତିକେଶ୍ୱର[୧୩]    ଶିବଗଣଙ୍କ ଆବର
ଦ୍ୱାରକା ସଇନମାନେ ଜୀବନ ଘେନି[୧୪]
ସମକୁଷ୍ଟ ହର ଉଠିଲେ
ଦେଖିଣ ସମସ୍ତେ ମନେ ଆନନ୍ଦ ହେଲେ[୧୫] ॥୧୭॥

---

୧ । ଗ କାରଣ
୨ । 'ଗ' ପୋଥିରେ ଏହି ପାଠ ନାହିଁ
୩ । ଘ. ଏ କରନ୍ତୀ ବେନି
୪ । ଗ. ସର
୫ । ଖ ଗ. ପ୍ରଣ
ଘ. ପ୍ରୁଣ ମୁଖରେ
୬ । ଖ. ମହୌଷଧି
ଗ. ମୌଷଧି ସେ
ଘ. ମହଉଧି
୭ । ଗ. ବ୍ରହ୍ମା ହଟେ ଡାକ ଦ୍ୟନ୍ତି
୮ । ଘ. ଜୀବନ୍ତ ନେଇ
୯ । ଗ. ବାଇଲେ
ଘ ପିହୁସ ବାସବ ସିଞ୍ଚିଲେ
୧୦ । ଗ. ବହନ
ଘ. ସମସ୍ତେ ଏକାବେଳେକେ ଉଠୀ ବସିଲେ
ଖ. ଗଣେଶ କାର୍ତ୍ତିକେଶ୍ୱର ଶିବଗଣ ହିଁ ଆବର
ଦ୍ୱାରକାର ସଇନ୍ୟମାନେ ଜିବନ ସେଣି
(ଅଧିକ ପାଠ)
୧୧ । ଖ. ପ୍ରଦମ୍ନ
ଘ. ପଦ୍ମନ ସର୍ବ
୧୨ । ଘ. ଭଣ ସର୍ବ
୧୩ । ଘ. ଗଣ କାର୍ତ୍ତିକେସ୍ୱର
୧୪ । ଗ. ଜିବନ ପାଇଁ
ଘ. ଆବର ଘେନି
୧୫ । ଖ ଘ. ଦେଖିକରି ସକଳେ ଆନନ୍ଦ ହୋଇଲେ
ଗ. ଦେଖିକରି ସକଳେ ଆନନ୍ଦ ହୋଇଲେ

ବ୍ରହ୍ମା ଦେଖି ଡରିଡରି[1] କହନ୍ତି ତାଙ୍କୁ ଉତ୍ତରି
କାର୍ତ୍ତିକ ପାଇଁ ତୁମ୍ଭ ବେନି[2] ସମର ହେଲ[3]

କହନ୍ତି ସେ ତ୍ରିଲୋଚନ ଶୁଣ ହେ ଚତୁରାନନ
ବରୁଣ ଦେବତା ଏତେ ଅନର୍ଥ[4] କଲା
ଜାଣଇ ନା ତାହାର[5] ନାଶ
ବାଳକାଙ୍କ କନ୍ୟା ଆମ୍ଭେ ଥିଲୁ ନା ବଶ[6] ॥୧୮॥

ଶ୍ରୀକୃଷ୍ଣ ବୋଇଲେ ଧାତା ଶୁଣ ଆମ୍ଭର ବାରତା
ବରୁଣ ବଶ ଆଣିଲେ ଆନନ୍ଦାନନ୍ଦ

କାର୍ତ୍ତିକ କୋପେ ଅଇଲେ ଆମ୍ଭ ପୁଅଙ୍କୁ ମାଇଲେ
ତାହା ସକାଶରୁ ଏବେ ହୋଇଲ[7] ଦ୍ୱନ୍ଦ
ବ୍ରହ୍ମା ବୋଲେ ଶୁଣ ଈଶ୍ୱର
ସବେ ମେଳ ହୋଇ[8] ଚାଲ ବରୁଣ ପୁରୀ ॥୧୯॥

ଆନନ୍ଦାନନ୍ଦ କୁମର ସଙ୍ଗତେ କାର୍ତ୍ତିକେଶ୍ୱର
ବରବେଶ କରି ଉଭା କରିବା ନେଇ

କନ୍ୟା ଧରି ପୁଷ୍ପମାଳା ଦେବନ୍ତି ଯାହାର ଗଳା
ତାହାକୁ ବଶ କରିବା ସୁମେଳ[9] ହୋଇ
ସନମତ ସକଳ କଲେ
ବରୁଣ ଭୁବନେ ଯାଇ[10] ପ୍ରବେଶ ହେଲେ ॥୨୦॥

---

୧। ଘ. ବ୍ରହ୍ମା ଶଙ୍କ ହର
୨। ଖ ଘ. ବେନି ଦେବ
୩। ଗ. କଲ ସମର
୪। ଘ. ଏ ଅନର୍ଥ
୫। ଘ ପାଶରେ ତାହାର
୬। କ. କଶ
ଗ ଘ. ଥିଲୁ ସେ ବଶ
୭। ଗ ତାହା ପ୍ରକାଶରୁ ଏବେ ହୋଇଲ
ଘ. ହୋଇଲ ଅନର୍ଥ
୮। ଖ ଘ. ସକଳେ ସୁମନେ
ଗ. ସକଳ ସୁମେଳେ
୯। ଖ ଘ. ସମେଳ
୧୦। ଖ ଘ. ସର୍ବେ

ବେଢ଼ କୁମରକୁ ବର          ବେଶ କରଣ ସଭର
କୁସୁମ ମାଳା କନ୍ୟାର ହସ୍ତରେ ଦେଲେ
କହନ୍ତିରେ ରମାବର          ଏ ବେଢ଼ ଅଛନ୍ତି ବର
ତୋ ଇଚ୍ଛା ଯାହାକୁ ହେବ ବର ବୋଇଲେ
ଶୁଣି କନ୍ୟା ତାଙ୍କୁ ଗୁହିଁଲେ
ଷଡ଼ ମସ୍ତକ ତାଙ୍କର କଣ୍ଠେ ଦେଖିଲେ[୧] ॥୨୧॥

ବଳରାମଙ୍କ ନନ୍ଦନ          ସାକ୍ଷାତ କଏ ମଦନ
ତାଙ୍କ କଣ୍ଠେ ପୁଷ୍ପମାଳା[୨] ଦେଲା ତରୁଣୀ[୩]
ଶ୍ରୀକୃଷ୍ଣ ଆନନ୍ଦ ହେଲେ          ବରୁଣ ତାହାଙ୍କୁ ନେଲେ
ରତ୍ନବେଦୀରେ ତାହାଙ୍କୁ ବସାଇ ଆଣି[୪]
ବ୍ରହ୍ମା ଶିବ ସକଳେ ଦେବେ
ବିଭା କରାଇଲେ ତାଙ୍କୁ ବଡ଼ ଉତ୍ସବେ[୫] ॥୨୨॥

ବରୁଣ ସନ୍ତୋଷ ହେଲେ[୬]          ବହୁ ଯଉତୁକ ଦେଲେ
ବରୁଣ ପୁରେ[୭] ସକଳେ କଲେ ଭୋଜନ[୮]
ରାମକୃଷ୍ଣ କନ୍ୟା ବର          ଯେଜଣ ଦ୍ୱାରକା ପୁର
ପରବେଶ ହୋଇଲେ ସେ ଆନନ୍ଦ ମନ
କଇଳାସେ ଈଶ୍ୱର ଗଲେ
ପାଣ୍ଡବେ କଦମ୍ବ ବନେ ପ୍ରବେଶ ହେଲେ ॥୨୩॥

---

୧। ଖ ଘ. ବ୍ରହ୍ମା କହନ୍ତି ସୁନ୍ଦରୀ ବେନିଯଣ ଏକ ବର ସ୍ୱଇଚ୍ଛା ହୋଇବ ଯାକୁ ବୋଲି ବୋଇଲେ
ଶୁଣି କନ୍ୟା ତାଙ୍କୁ ଗୁହିଁଲେ
ବାଳକର ଛସିର କାର୍ତ୍ତିକ ଦେଖିଲେ
ଗ. କହନ୍ତି ପୁଣ ସୁନ୍ଦରୀ ବେନୀ ଜଣ ଏକ ବର ସ୍ୱଇଚ୍ଛା ଯାହାକୁ ତୋର ବୋଇଲେ
ଶୁଣି କନ୍ୟା ତାଙ୍କୁ ଗୁହିଁଲେ, ବାଳକର ଛସିର କାର୍ତ୍ତିକ ଦେଖିଲେ
ଘ. ବାଳକର ଛଅସିର କାର୍ତ୍ତିକକୁ ଦେଖିଲେ

୨। ଗ. ପୁଷ୍ପମାଳା
ଘ. ଦଏ ତରୁଣୀ

୩। ଖ. ସୁନ୍ଦରୀ

୪। ଘ. ବସାଇଲା ଅଣି

୫। ଗ. ଉତ୍ସବେ
ଘ. ବିଭା କରାଇ ତାଙ୍କୁ

୬। ଖ ଘ. ତୋଷ ହୋଇଲେ

୭। କ. ପୁର

୮। ଘ. କଲେ ଭୁଜନ

ଦେବେ ଗଲେ ସ୍ୱର ପୁର — ଇନ୍ଦ୍ରକ ସେ[୯] ବରୁଣର
ବ୍ରହ୍ମା ପଣବନ୍ତୀ[୧୦] ପୁରେ ହେଲେ ପ୍ରବେଶ
ଶୁଣିମା ହେ ସାଧୁଜନ — ଦୟାନିଧି ଭଗବାନ
ତାଙ୍କ ମାୟାରୁ ବଳିବ କେଉଁ ପୁରୁଷ
ତାହାଙ୍କର[୧୧] ବେନି ଚରଣ
ଦୀନ ବିଶ୍ୱମ୍ଭର ତଳ୍ପି ପଶେ[୧୨] ଶରଣ ॥୨୩॥

୯ । ଚ. ଇନ୍ଦ୍ରବେ ସେ
୧୦ । ଖ ଗ ଘ. ପଟଶୋବନ୍ତୀ
୧୧ । ଘ. ତାହାଙ୍କ
୧୨ । ଖ ଘ ମାଗେ

## ତ୍ରୟୋବିଂଶ ଛାନ୍ଦ

ରାଗ—ଆହାରି[୧]

ପଞ୍ଚ ପାଣ୍ଡବେ ଦ୍ରୌପଦୀ ଆଦି ସର୍ବେ[୨] ସକଳ ଋଷିଗଣ ଭୁଲେ[୩]
କଦମ୍ବ ବନ ତେଜ କରି ସନ୍ତରେ ପଶ୍ଚିମ ମୁଖେ[୪] ଚଳିଗଲେ
ଏମନ୍ତେ, ବହୁତ ବନ ଗଲେ[୫] ଜାଣି
ମଳୟ ବନରେ ପ୍ରବେଶ ହୋଇଲେ ଭୂଶତରେ ଯେ ଧର୍ମମଣି[୬] ॥୧॥
ବଶ୍ୱାମିଷ ମହାମୁନି[୭] କହୁଛନ୍ତି ଶୁଣିବା ହେ ଧର୍ମନନ୍ଦନ
ପୂର୍ବେ ଏ ବନରେ ବେହାର କଲେଟି ଅଞ୍ଜନାକୁ ଯେନ ପବନ[୮]
ସର୍ବଦା, ମଳୟ ଏଥିରେ ବହଇ
ସକଳ ବୃକ୍ଷ ହୋଇଛନ୍ତି ଚନ୍ଦନ ମଳୟ ପବନ[୯] ବୋଲଇ ॥୨॥

---

୧ । ଘ. ରାଗ କଲ୍ୟାଣ ଆହାରି
୨ । ଖ. ହର୍ଷିତରେ
ଗ. ଦ୍ରୋପଦ ସହିତରେ
ଘ. ଦ୍ରୁପଦୀ ଯେଣ ଭୂଲେ
୩ । ଘ. ସକଳ ମୁନି ଚଳିଲେ
୪ । ଖ. ଫେରେ
୫ । ଘ. ବନ ଗଲେ
୬ । ଗ. ଭୂଶତେ ଧର୍ମ ଲୂପମଣି
ଘ. ଭୂଶତେ ଧର୍ମ ନୃପମଣି
୭ । ଘ. ବଡ଼ମିଷ ମହାମୁନି
୮ । ଘ. ପୂର୍ବେ ବନରେ ଅଞ୍ଜନାକୁ ଯେଜାଣ ବେହାର କଲେଟି ପବନ
୯ । ଗ ଘ. ହୋଇଛନ୍ତି ଚନ୍ଦନ ମଳୟ ବନ ଏ

ଅବସନ୍ତରେ ବସନ୍ତ ସ୍ୱେଚ୍ଛ ବନ ଅଛନ୍ତି ଦ୍ରବ୍ୟ ଦୂ ଫଳ
ସରିତା ନାମେ ନଦୀ ଏକ ବହୁଛନ୍ତି ସେ ଜଳ ଅତ୍ୟନ୍ତ ନିର୍ମଳ
ଏଥିରେ ରହିବା ଆମ୍ଭେ ସ୍ନାନ କରି
ଶୁଣି ଧର୍ମସୁତ ଆନନ୍ଦ ହୋଇଲେ ରଚିଲେ ପର୍ଣ୍ଣଶାଳା ସୁଖ ॥୩॥
ତହିଁରେ ପାଣ୍ଡବେ ନିଶ୍ଚିନ୍ତେ ରହିଲେ ସକଳ ତପୀଗଣ ସେବ
ଦ୍ରବ୍ୟ ଫଳ ମୂଳ ଆହାର କରିଣ ବଞ୍ଚନ୍ତି ଦିବସ ରଜନୀ
ଏ ରୂପେ କେତେ ସମୟ ତହିଁ ଗଲା
ଦିନେକ ନକୁଳ କୁମାର ଏକାନ୍ତେ ଅରଣ୍ୟ ଭ୍ରମିବାକୁ ଗଲା ॥୪॥
ଧର୍ମନନ୍ଦନ ଆଜ୍ଞାରେ ଗଣ୍ଡା ଜୀବ ଲୋଡ଼ଇ ବନେ ଲତା ଗିରି
ବଂଶମାନେ ଯାଇଁ ପ୍ରବେଶ ହୋଇଲା ଗଣ୍ଡା ଖୋଜଇ ଅନୁସରି
ନକୁଳ, ଦେଖିଲେ ରେବାସୁର ଦୈତ୍ୟ
ବୋଲଇ ମାନବ ମୋ ମୁଖେ ପଡ଼ିଲୁ କ୍ଷୁଧାରେ ମୁଁ ବଡ଼ ଆରତ ॥୫॥
ଯେତେ କହି ରେବାସୁର ଉଠି କରି ନକୁଳର କର ଧଇଲା
ଯେମନ୍ତ ଦେଖି ଅସୁରକୁ ନକୁଳ କୁମାର ଯେ ରୂପେ କହିଲା
ହେ ବୀର, ଧର୍ମନନ୍ଦନ ଛନ୍ତି ପେଷି
ତାହାଙ୍କ ଆଜ୍ଞାରେ ଗଣ୍ଡାଜୀବ ମୁହିଁ ଲୋଡ଼ୁଛି ଅରଣ୍ୟରେ ପଶି ॥୬॥

---

୧। ଗ. ନଦୀଏ ବହୁଅଛି
ଘ. ନଦୀ ଏଥି
୨। ଖ ରଚିଲେ
ଘ. ଆନନ୍ଦ ହୋଇଣ ରଚିଲେ ପର୍ଣ୍ଣଶାଳା
୩। ଗ. ତପୁଣି
ଘ ମୂଳ ଭୋଜନ କରିଣ ବଞ୍ଚିଲେ
୪। ଘ. ଲୋଡ଼ନ୍ତି ବନ
୫। ଖ. ରେବା ନଦୀତୀରେ
ଗ. ବଂଶମାଳରେ
୬। ଗ. ପରବେଶ
୭। ଘ. ରେବାନଦୀ ତୀରେ ପ୍ରବେଶ ହୋଇଲେ
ଲୋଡ଼ନ୍ତି ଗଣ୍ଡା ଅନୁସରି
୮। ଦ: ମୁଂ ବଡ଼ କ୍ଷୁଧାରେ ଆରତ
୯। ଖ ଏତେ ବୋଲିକରି ରେବାସୁର ଉଠୀ
ନକୁଳଙ୍କ କେଶ ଧଇଲା
ଗ. ଏତେ କହି ଉଠୀ ରେବାସୁର ଦୈତ୍ୟ
ନକୁଳର କର ଧଇଲା
ଘ. ନକୁଳଙ୍କ କର
୧୦। ଖ ଗ. ଦେଖିଣ ଅଶ୍ୱିନୀ କୁମାର
ତାହାକୁ
ଘ. ଏମନ୍ତ ବଚନ ଅଶ୍ୱିନୀ କୁମାର ଭଣଇ
ତାହାକୁ

ତାହାଙ୍କୁ କହଣ ଭୁମ୍ଭ ପାଶେ ମୁହିଁ ଆସିବ[1] ଉନବାର ଦଇତ୍ୟ
ନକୁଳ ଚନ୍ଦ୍ରଂ ଏମନ୍ତ ଶୁଣିକର ଛାଡ଼ିଲା ରେବାସୁର ଦଇତ୍ୟ
ବୋଲଇ[2] ବହନ ଆସିବୁଟି ଖାର
ସଇତ୍ୟ କଳକୁ ଭୁମ୍ଭଙ୍କୁ ଗୁଡ଼ି ଅଛି[3] ଖଡ଼୍‌ଗଧାରେ ଆକୁଳ ଶଙ୍କର ॥୭॥

ଏମନ୍ତ କହିଣ ରେବାସୁର ଦଇତ୍ୟ ଗଣ୍ଡା ଗୋଟିଏ[4] ଆଣିଦେଲେ
ସେ ଗଣ୍ଡାକୁ ଘେନ ଅଶ୍ୱିନୀ କୁମାର[5] ଅତ୍ୟନ୍ତ ହରଷ ହୋଇଲେ
ନକୁଳ, ବାହୁଡ଼ିଣ ଚନ୍ଦ୍ରଂ ଅଇଲେ
ଯୁଧିଷ୍ଠି ଦେବଙ୍କୁ ପ୍ରସନ କରଣ ସକଳ ବୃତ୍ତାନ୍ତ କହିଲେ ॥୮॥

ସଇତ୍ୟ କହଇ ଅସୁରକୁ ଅଇଲେ[6] ଯାଉଛୁ ଏବେ ତାର ପାଣ
ରଖିଲେ ରଖି ମାଇଲେ ମୋତେ ମାରୁ ଶୁଣି ହରଷ ଧର୍ମସୁତ[7]
ବୋଲନ୍ତି, ମାରୁତ ଯାଅ ତୋର ସଙ୍ଗେ[8]
ଅସୁର ଯେବେ ନଟାଳବ ଭୁମ୍ଭଙ୍କୁ[9] ତାକୁ ମାରିବ ରଣ ରଙ୍ଗେ ॥୯॥

ଶୁଣି ଭୀମସେନ ନକୁଳକୁ ଘେନ ଭୁରିତେ ଚନ୍ଦ୍ରଂ ଚଳିଗଲେ
ବାନ୍ଧବମାନେ ଯାଇ[10] ରେବାସୁର ଦଇତ୍ୟ ଆଶ୍ରମ ନିକଟେ ମିଳିଲେ[11]
ବୋଲନ୍ତି, ମାରୁତି[12] ଯାଅ[13] ତାର ପାଣ
ଛଡ଼କର ଭୁଞ୍ଜ ମୋତେ ଡାକଦେବୁ ଯେବେ ନଟାଳବ ରାକ୍ଷସ[14] ॥୧୦॥

---

୧ । ଙ ଘ. କହି ଭୁମ୍ଭ ପାଶେ ଆସିବୁ ଏ ମୋର
୨ । ଘ. ବୋଧିଲ
୩ । ଘ. ଗୁଡ଼ି ଛି ଦେଖ ମୋର
୪ । ଘ. ଗୋଟିଏ
୫ । ଘ. ଅଶ୍ୱିନ ନନ୍ଦନ
୬ । ଙ ଅଣିଚୁ
ଘ ଆସିଛୁ
୭ । ଖ ଧର୍ମଶୀଳ
ଘ. ଧର୍ମସୁତ
୮ । ଘ. ଭୁମ୍ଭ ସଙ୍ଗେ
୯ । ଘ. ଭୁମ୍ଭଙ୍କୁ ନଟାଳବ
୧୦ । ଙ ରେବାନଦୀ ତୀରେ
୧୧ । ଗ. ପ୍ରବେଶ ହୋଇଲେ ରେବାସୁର ଦଇତ୍ୟ ଆଶ୍ରମେ
୧୨ । ଖ ଘ. ମାରୁତ ବୋଲନ୍ତି
୧୩ । ଘ. ନାଅ
୧୪ । ଖ. ଭିତ କର ଡ଼ାକେ ଦେବୁ ଯେବେ ତୋତେ ନଟାଳବ ଦୁଷ୍ଟ ରାକ୍ଷସ

ଶୁଣି ନକୁଳ ସତ୍ୱରେ ଚଳିଗଲେ[1] ପ୍ରବେଶ ରେବାପୁର ପାଶେ[2]
ନକୁଳ ସତ୍ୟ ଦେଖିକରି ଅସୁର[3] କୋଳେ ଧଇଲା ସେ ହରଷେ[4]
ଅସୁର, ଅନେକ ଭୂଷଣ ମଣ୍ଡିଲା
ତୁ ମୋର ନନ୍ଦନ ବୋଲିଣ ଆନନ୍ଦେ ଉଣ୍ଡ ବଦନେ[5] ଚୁମ୍ବ ଦେଲା ॥୧୧॥

ତୋ ସତ୍ୟ ବୁଝିଲା ଯାଅ ତୋର ବାସ ଶୁଣି ନକୁଳ ଲେଉଟିଲେ
ଶୁଣି[6] ଭୀମସେନ ଆନନ୍ଦ ହୋଇଣ ନକୁଳକୁ ଘେନି ଅଇଲେ[7]
ଯୁଧିଷ୍ଠି, ଚରଣେ କରନ୍ତି ବନ୍ଦନ
ରେବାପୁର କଥା ଶୁଣିଣ ଆନନ୍ଦ ହୋଇଲେ ଧର୍ମଙ୍କ ନନ୍ଦନ ॥୧୨॥

ଏମନ୍ତେ କେତେମାସ ରହି ପାଣ୍ଡବେ ସେବନ ତେଜି ଚଳିଗଲେ
ଅତ୍ୟନ୍ତ ସୁନ୍ଦର ଦିବ୍ୟ ତରୁବର ପତିବ୍ରତା ବନେ ମିଳିଲେ
ଦେଖନ୍ତି, ଔଷଧ ବର୍ଣ୍ଣେ ତରୁ ଜାତି
ଜାମ୍ବୁ ଜମ୍ବିଲ କଦଳୀ ଝଞ୍ଜ ପାଶଣ ପଡ଼ୁଛନ୍ତି ଝଡ଼ି ॥୧୩॥

ଅତ୍ୟନ୍ତ ନିର୍ମଳ ଦେଖିଣ ସେବନ[8] ଯୁଧିଷ୍ଠି ଦେବ ହେଲେ ତୋଷ
ଋଷିଙ୍କି ବୁଝି ପଚାରନ୍ତି ଏ ବନ କୁସୁମେ ଅତ୍ୟନ୍ତ ସୁବାସ
ମଳୟ ପବନ ସଧୀରେ ବହଇ
ଦିବ୍ୟ ଫଳମାନେ ପଡ଼ୁଛନ୍ତି[10] ତଳ ଏ ମୋର ମନକୁ ମୋହଇ ॥୧୪॥

---

୧ । ପ. ଚଳିଗଲେ
୨ । ଉ. ଶୁଣି ନକୁଳ ପରବେଶ ହୋଇଲେ ପ୍ରବେଶ ରେବାପୁର ଦେଶ
୩ । ଦେଖିକରି ଦାନବ
୪ । ଖ ପ. ସ୍ନେହବଶେ
୫ । ଗ. ପାଠ ନାହିଁ
୬ । ଖ ପ. ଦେଖି
୭ । ଖ ଗ ପ. ନକୁଳ ଘେନି ଚଳିଗଲେ
୮ । ଗ ଫଳେ
୯ । ପ. ସେ ବନ ଦେଖିଣ
୧୦ । ପ. ଫଳମାନ ପଡ଼ିଛନ୍ତି

ପତିବ୍ରତା ବନ କେଉଁନ୍ ହୋଇଲା ଶୁଣିତ ଇଚ୍ଛା ମୋର ମନ[1]
ମାର୍କଣ୍ଡ ଋଷି ଦକ୍ଷିଣ ବୋଲନ୍ତି ଶୁଣ ହେ ଯୁଧିଷ୍ଠି ରାଜନ[2]
ପୂର୍ବେ ସେ, ଅଶ୍ୱପତି ନାମେ ନୃପତି
ଅତ୍ୟନ୍ତ ସୁନ୍ଦରୀ ସାବିତ୍ରୀ ନାମରେ ଅଟଇ ତାହାର ଦୋହିତା[3] ॥୧୫॥

ଦ୍ୟୁମତ୍ସେନ ପୁତ୍ର[4] ସତ୍ୟବନ୍ତଙ୍କୁ ସେ ସାବିତ୍ରୀ ହୋଇଲେକ[5] ବଶ
ରତି କାମ ପ୍ରାଏ ସେ ବେନି ସୁନ୍ଦର କବା କହିବା ତାଙ୍କ ଶୋଭ
ରାଜନ, ସେ ଦ୍ୟୁମତ୍ସେନ[6] ନୃପବର[7]
ଧର୍ମବନ୍ତ ତାର ବେନି ନେତ୍ର ଅନ୍ଧ ସୁପ୍ରଭା ନାମେ ରାଣୀ ତାର[8] ॥୧୬॥

ସେ ରାଣୀ ଚକ୍ଷୁ ବେଦନା ବଶୁଂ ପୁଣ ତାହାର ନେତ୍ର ଗଲା
ଶବାଦ କଟିଣ ଏକଇ ରାଜନ ତାର ରାଜ୍ୟ ବଳେ ହରିଲା[9]
ରାଜନ, ରାଜ୍ୟ ଛେଡ଼ିଣ ଦ୍ୟୁମ୍ନସେନ[10]
ପତ୍ନୀ ପୁତ୍ରବଧୂ ପରିଜନ ଘେନି ପ୍ରବେଶ ହୋଇଲା ସେହି ବନ[11] ॥୧୭॥

କ୍ରମେ ସକଳେ ସଙ୍ଗରୁ[12] ପଳାଇଲେ ରହିଲେ ମାତ୍ର ଗୃହ ପ୍ରାଣୀ
ସାବିତ୍ରୀ ସତ୍ୟବନ୍ତଙ୍କୁ ସଙ୍ଗେ ଘେନି ରହିଲେ ସେ ଅନ୍ଧ ଅନ୍ଧୁଣୀ
ରାଜନ, ସେ ସତ୍ୟବନ୍ତ ନୃପସୁତ[13]
ବନରୁ ଫଳମୂଳ ଜଳ ଆଣିଣ ତୋଷନ୍ତି ପିତା ମାତା ଶତ୍ତ[14] ॥୧୮॥

ସାବିତ୍ରୀ କର ଧରି ପଥ କଢ଼ାଇ ସାନ ନିତ୍ୟକର୍ମ କରାନ୍ତି
ଏ ରୂପେ ସାବିତ୍ରୀ ସତ୍ୟବନ୍ତ ଘେନି ଅନ୍ଧ ଅନ୍ଧୁଣୀକି ପାଳନ୍ତି
ରାଜନ, କେତେ ସମୟ ବର୍ତ୍ତି ଗଲା
ଦିନେକ ସାବିତ୍ରୀ ଶାଶୂ ଶ୍ୱଶୁରଙ୍କ ଚରଣେ ବଡ଼ ଭକ୍ତି କଲା[15] ॥୧୯॥

---

୧ । ଘ. ଏଥି
୨ । ଘ. ଧର୍ମ ନୃପବର
୩ । ଘ. ଦୁହିତା
୪ । ଦ୍ୟୁମ୍ନସେନ
୫ । ଘ. ହୋଇଲେ
୬ । ଖ. ଦ୍ୟୁମ୍ନସେନ
୭ । ଘ. ନୃପବର
୮ । ଘ. ବର
୯ । ଘ. ସେନିଲା
୧୦ । ଘ. ସେହି ସତ୍ୟବନ୍ତ ନୃପସୁତ
୧୧ । ଘ. ବନରୁ ଫଳ ମୂଳ ଆଣି ତୋଷନ୍ତି ପିତା ମାତା ନିତି
୧୨ । ଘ. କର୍ମ ସଙ୍ଗକୁ ସକଳେ
୧୩ । ଘ. ରାଣୀ ଘେନିଣ ଦ୍ୟୁମତ୍ସେନ
୧୪ । ଘ. ପତ୍ନୀ ପୁତ୍ରବଧୂ ପରିଜନ ଘେନି ପ୍ରବେଶ ହୋଏ ଏହି ବନ
୧୫ । ଘ. ପୋଥିରେ ୧୯ ପଦଟି ନାହିଁ

ଚରଣେ ପଡ଼ି କର ଯୋଡ଼ି ଜଣାନ୍ତି ଶୁଣିମା ଦେଉ ସାବଧାନେ
ଶୁଣିଣ ଆଜ୍ଞା ଦେଲେ ଫଳମୂଳ ଆଣିବାକୁ ପୁତ୍ରଙ୍କ ସଙ୍ଗେ ଯିବ ବନେ
ଶୁଣିଣ, ଶାଶୁ ଶ୍ୱଶୁର ଆଜ୍ଞା ଦେଲେ
ସତ୍ୟବନ୍ତଙ୍କର ସଙ୍ଗରେ[1] ସାବିତ୍ରୀ ସେଦନ ବନେ ଭ୍ରମିଗଲେ ॥୨୦॥

ଏମନ୍ତେ ବନେ ଫଳମୂଳ ଲୋଡ଼ନ୍ତେ ମଧ୍ୟସ୍ଥାନ ଗଲେ ଦିନକର[2]
ସତ୍ୟବନ୍ତ କହେ ଶୁଣିମା ସାବିତ୍ରୀ ବ୍ୟାକୁଳ ହୋଏ ମୋ ଶରୀର
ନୟନେ, ନିଦ୍ରା ଆସିଣ ଉପଗତ
ତୁମ୍ଭେ ସେ ମୋର ପାଶରେ ଜଗି ବସ ମୋ ତନୁ ଅତି[3] ଅସକତ ॥୨୧॥

ସାବିତ୍ରୀ କୋମଳ ପତ୍ର ଶେଯ୍ୟା କରି ଅଞ୍ଚଳ ଶେଷ ତହିଁ[4] ପାଡ଼ି
ସାବିତ୍ରୀ ଜାନୁରେ ସୀମସ୍ଥାନ ଦେଇ ସତ୍ୟବନ୍ତ ତହିଁ ପଡ଼ନ୍ତି
ସାବିତ୍ରୀ, କରେଣ ତା ତନୁ ଆଶ୍ୱାସେ
ସତ୍ୟବନ୍ତ ତହିଁ ମହାନିଦ୍ରା ଗଲେ ଚେତନା ନାହିଁ ଅଙ୍ଗ[5] ଦେଶେ ॥୨୨॥

କାଳ ବିକାଳ ଯମଦୂତ ବେନି ସେ ମିଳିଲେ ସାବିତ୍ରୀ ପାଶେଣ
ବୋଲନ୍ତି ସତୀ ଅଲଗା ହୁଅ ତୁମ୍ଭେ[6] ନେବୁ. ଏ[7] ସତ୍ୟବନ୍ତ ପ୍ରାଣ
ତାହାର ଆୟୁଷ ହୋଇଲାକ ଶେଷ
ଆମ୍ଭେ ଯମଦୂତ ନେବୁ ତାର ପ୍ରାଣ ବନ୍ଧନ କରି କାଳପାଶ ॥୨୩॥

---

୧ । ଘ. ସଙ୍ଗତେ
୨ । ଘ. ବନକର
୩ । ଚ. ଥାଟି
୪ । ଚ. ସେ ସ୍ତଗ
୫ । ଙ. [illegible]
୬ । ଘ. ଭ୍ରିଡ଼
୭ । ଓ. ସେ

ସାବିତ୍ରୀ ବୋଲନ୍ତି ଆଗ ମୋତେ ନେଇ ପଛେ ସେ ନେବ[୧] ତାଙ୍କ ପ୍ରାଣ
ଯମଦୂତ କହେ ବହୁତ ଆୟୁଷ କେ ହରିପାରେ ତୁମ୍ଭ ପ୍ରାଣ
ତୁମ୍ଭର, କୋଳରେ ଶୋଇଛନ୍ତି ପତି
ତୁମ୍ଭର ତେଜେ ଆମ୍ଭେ ଭଏ କରୁଛୁଁ[୨] ତୁମ୍ଭେ ସେ ଅଟ ମହାସତୀ ॥୨୪॥

ସାବିତ୍ରୀ ବୋଇଲେ ବଧବା ହୋଇବ ନା ଏହାଙ୍କୁ ଗୁଡ଼
ଏମନ୍ତ ଶୁଣି ଦୂତମାନେ ଯମଙ୍କୁ କହିଲେକ ଯାଇଁ[୩] ବାହୁଡ଼ି
ରାଜନ, ସତ୍ୟବନ୍ତଙ୍କୁ ଆଣି ଗଲୁ
ସାବିତ୍ରୀ କୋଳେ ନିଜ ପତି ରଖିଲେ ତା'ତେଜେ ପଶି ନ ପାରିଲୁ ॥୨୫॥

ଶୁଣି ଯମ କ୍ରୋଧେ ମହିଷି ଆରୋହି ଘେନିଣ କାଳଦଣ୍ଡ କରେ[୪]
ମୃତ୍ୟୁ ଦେବତାଙ୍କୁ ସଙ୍ଗରେ ଘେନିଣ ପ୍ରବେଶ ସାବିତ୍ରୀ ପାଶରେ[୫]
ରାଜନ, ଯମ କହନ୍ତି ଶୁଣ ସତୀ
ବଳାତ୍କାର କରି କେମନ୍ତେ ରଖିଛ ଆୟୁଷ କ୍ଷୟ ତୁମ୍ଭ ପତି ॥୨୬॥

ଏମନ୍ତ କହିଣ ମୃତ୍ୟୁଙ୍କୁ ପେଷିଣ ସତ୍ୟବନ୍ତର ପ୍ରାଣ ଧରି
କାଳ ଫାଶରେ ବନ୍ଧନ କରି ତାଙ୍କୁ ସତ୍ୱରେ ଜଗୁପତି ଫେରି
ସାବିତ୍ରୀ, ମୃତଶବକୁ ତଳେ ଥୋଇ
ମହାତେଜବନ୍ତ ରୂପେଣ ସୁନ୍ଦରୀ[୬] ଯମଙ୍କ ପଛରେ ଗୋଡ଼ାଇ ॥୨୭॥

ତାହା ଦେଖି ଯମ ଆଶ୍ଚର୍ଯ୍ୟ ହୋଇଣ ବୋଲନ୍ତି ମହାସତୀ ଶୁଣ
ସ୍ଥୂ ଦେହ ଘେନି[୭] ଆକାଶ ମାର୍ଗରେ ଆସୁଛ କେବଣ କାରଣ
ସାବିତ୍ରୀ, ବୋଲନ୍ତି ଶୁଣ ଜଗୁରାଏ
ପତିବ୍ରତା ମୁଂ ପତିକ ତେଯ୍ୟାକରି କେମନ୍ତେ ରହିବ ଏକାଏ ॥୨୮॥

---

୧। ପ. ନେମ
୨। ପ. ଭଏ ପାଉଛୁଁ
୩। ପ. କହିଲେ ଯାଇଁଣ ଯମଙ୍କୁ
୪। ପ. ଖଣ୍ଡ
୫। ଢ. ଆଗରେ
୬। ରୂପ ମହାଦ୍ୟୁତି
୭। ପ. ସେନ

ଯେଉଁଠାଏ ନେବ ମୋ ପ୍ରାଣପତିଙ୍କି ସେଠାକୁ ବୋଲନ୍ତି ଆମ୍ଭେ ଯିବୁ
ତୁମ୍ଭେ ସ୍ୱୟଂ ଧର୍ମ ଈଶ୍ୱର ମନରେ ଏଥିପାଇଁ କସ କରିବୁ
ଶମନ, କହନ୍ତି ତାହାଙ୍କୁ ଉତ୍ତର
ପ୍ରସନ୍ନ ହୋଇଲୁଂ ସତ୍ୟବନ୍ତ ଛାଡ଼ି ଆମ୍ଭଙ୍କୁ ସ୍ତ୍ରୀ ମାଗ ବର[୧] ।।୨୯।।

ସାବିତ୍ରୀ ବୋଇଲେ ଆପଣ ଯେବେଂ ସେ ହୋଇବା[୨] ମୋଠାରେ ପ୍ରସନ୍ନ
ଏକ ବର ଦେବା ହେଉ ଆମ୍ଭ ଶାଶୂ ଶ୍ୱଶୁର ଲଭିବେ ନୟନ
ଶମନ, ବୋଲନ୍ତି ଅସ୍ତୁ ଏକ ବର
ସନ୍ତୋଷେ ମହାସତୀ ଏବେ ଲେଉଟ ଆମ୍ଭେ ଯାଉଛୁ ନିଜ ପୁର ।।୩୦।।

କହି ଜମ୍ବୁପତି ଗମନ କରନ୍ତେ ସାବିତ୍ରୀ ପଛରେ ଗୋଡ଼ାନ୍ତି
ରାଜା ଯମରାଜା[୩] କମ୍ପା ମହାସ୍ତ୍ରୀ ଗମନ କରୁଛ ବୋଲନ୍ତି
ସାବିତ୍ରୀ, ବୋଲନ୍ତି ଶୁଣ ଜମ୍ବୁପତି[୪]
ବିବାଦ ରାଜା କାଳ ଛାଡ଼ି ଯିବ ମୋ ଶ୍ୱଶୁର ହୋଇବେ ନୃପତି[୫] ।।୩୧।।[୬]

ଏବେ ଆପଣ ଦୁଃଖ ପାଇ ନ ଆସ କହନ୍ତି ଶମନ ଚଳନ୍ତି
ଖଣ୍ଡେ ଦୂରେ ପାଇ ଫେରି ଅନାଇଲେ ପଛରେ ସାବିତ୍ରୀ ଅଛନ୍ତି[୭]
ଶମନ, ବୋଲନ୍ତି ରହ ରହ ସ୍ତ୍ରୀ
ଶାଶୂ ଶ୍ୱଶୁରଙ୍କ ପାଶେ ଏବେ ଯାଅ କମ୍ପାଇଁ ଶୂନ୍ୟେ କର[୮] ଗତି ।।୩୨।।

ସାବିତ୍ରୀ ବୋଇଲେ ବରେକ ମାଗିବି ପ୍ରସନ୍ନେ ଦେଲେ ଯିବି ଫେରି
ଯମରାଜା ବୋଲେ ମାଗ ମହାସ୍ତ୍ରୀ ଯେ ମନରେ ବାଞ୍ଛା ତୁମ୍ଭରି
କେବଳ, ଛାଡ଼ିଣ ସତ୍ୟବନ୍ତ ପ୍ରାଣ
ସାବିତ୍ରୀ ବୋଇଲେ ଶତେ ପୁତ୍ର ହେବ ମୋରେ ବର ଦେଲେ ଜାଣ ।।୩୩।।

---

୧ । 'ଘ' ପୋଥିରେ '୨୯' ପଦଟି ନାହିଁ
୨ । ଘ ଯମନ
୩ । ଙ. ମୋହାରାଜା
୪ । ଘ. ଶୁଣିମା ଦେବଦେବ
୫ । ଘ. ଆହୁରି କହୁ କଥାଏ ମୁଂ ମାଗିବି
ଅବଶ୍ୟ ବର ଦେବା ହେବ
୬ । ଘ. ଯମରାଜା କହେ ସତ୍ୟବନ୍ତ ପ୍ରାଣ ଛାଡ଼ିଣ ମୋତେ ମାଗ ଆନ
ସାବିତ୍ରୀ ବୋଇଲେ ନିଜ ଦେଶେ ମୋର ଶ୍ୱଶୁର ହୋଇବେ ରାଜନ
ଶମନ, ବୋଲନ୍ତି ଶୁଣ ମହାସ୍ତ୍ରୀ
ବିବାଦ ରାଜା କାଳ ଛାଡ଼ିଯିବ ସେ ଶ୍ୱଶୁର ହୋଇବେ ନୃପତି
୭ । ଘ. ସାବିତ୍ରୀ ପଛେ ଲାଗିଛନ୍ତି
୮ । ଘ. ପାଦ

ଯମ ବୋଇଲେ ଶତେ ପୁତ୍ର ହୋଇବେ[1] ସୁନ୍ଦର ସୁରବନ୍ତ ଗୁଣେ[2]
ଏବେ ଫେରଣ ଯିବାକୁ ମହାସ୍ତ୍ରୀ କ କାର୍ଯ୍ୟ ଅଛି ଆଉ ଏଣେ
          ରାଜନ, କହୁଣ ଯମ ଚଳଗଲେ
ତାଙ୍କ ପଛରେ ସାବିତ୍ରୀ ଗୋଡ଼ାଇଛୁ ଦେଖିଣ ଜମ୍ଭୁପତି ବୋଲେ ।୩୪।

କମ୍ପାଇଁ ଜଞ୍ଜାଳ କର ମହାସ୍ତ୍ରୀ ସନ୍ତୋଷ ହୁଅ ଏବେ ରହ
ସାବିତ୍ରୀ ବୋଇଲେ ଦେବତାମାନେ ସେ କେତେହେଁ ମିଥ୍ୟା ତୁମ୍ଭେ କହ
          ବଚନେ, ବୋଲୁଛ ତୁମ୍ଭେ[4] ମୋହାସ୍ତ୍ରୀ
ମୋତେଁ[3] ବର ଦେଲେ ଶତେ ପୁତ୍ର ହେବ କମ୍ପାଇଁ ନେଉଅଛ ପତି[5] ।୩୫।

ଶୁଣି ପ୍ରସନ୍ନୀଭୂତ ହେଲେ[6] ଜମ୍ଭୁପତି ପ୍ରସଙ୍ଗ କରନ୍ତି ଅନେକ
ଧନ୍ୟ ପତିବ୍ରତା ଧନ୍ୟ ତୁମ୍ଭ ସତ୍ୟ ଧନ୍ୟ ତୁମ୍ଭ ମାତା ଜନକ
          ସାବିତ୍ରୀ, ମୁଂ ଧନ୍ୟ ତୁମ୍ଭଙ୍କୁ ଦେଖିଲି
ଯେତେ ଲୋକ ଏହୁ ପ୍ରସଙ୍ଗ ଶୁଣିବେ ତାଙ୍କର ଦୋଷ ଉପେଖିଲ ।୩୬।

ଆଜ ଯେ ଜେଷ୍ଠ ଅମାବାସ୍ୟା ଦିବସ ଦୁଯା ନାମେ[7] ଅଟେ ନକ୍ଷତ୍ର
ମେଷ ଚନ୍ଦ୍ରକୁ ଷାଠିଏ ଦଣ୍ଡ ଭୋଗ ମଙ୍ଗଳବାର ଏ ପର୍ବ
          ସାବିତ୍ରୀ, ତୁମ୍ଭର ଆମ୍ଭର ଚରିତ
ପଣ୍ଡିତ ଜନମାନେ ଏହା ଲେଖିଣ ଜଗତେ କରିବେ ବିଖ୍ୟାତ ।୩୭।

ଏମନ୍ତ ବର ଦେଇଣ ସତ୍ୟବନ୍ତ[8] ଜୀବନ ଆଣି ସମର୍ପିଲେ
ଶାଶୁ ଶ୍ୱଶୁର ଦେଖିଣ ରାଜ୍ୟକର ଶତେକ ପୁତ୍ର ହେଉ ବୋଲେ
          ପୁତ୍ରଙ୍କୁ, ରାଜ୍ୟେ କର ଅଭିଷେକ[9]
ପତି ପତ୍ନୀ ବେନି ଏକ ସଙ୍ଗେ ପୁଣ ବସିବ ଆସି ସୁରଲୋକ ।୩୮।

---

୧ । ଘ. ହେଉ ସେ
୨ । ଖ. ଘଣେ
୩ । ଘ. ମୋତେ
୪ । ଖ. ମୋର
୫ । ଘ. ନେଉଛ ମୋ ପତି
୬ । ଘ. ଜମ୍ଭୁପତି ପ୍ରସନ୍ନୀଭୂତ ହୋଇ
୭ । ଘ. ବୁଝାନେ
୮ । ଘ. ସତ୍ୟବନ୍ତ
୯ । ଖ. ଅଭିଷେକ

ସାବିତ୍ରୀ ଓଷା ଜଗତେ ଯେ କରିବେ ତୁମ୍ଭର ଏ ପ୍ରସଙ୍ଗ ଶୁଣି
ଧୂପ ଦୀପ ନଇବେଦ୍ୟ ଦେଇକରି ଅତ୍ୟନ୍ତ ଆନନ୍ଦେ ତରୁଣୀ
ସେ ନାରୀ, ଲଭିବ ପତିବ୍ରତା ଫଳ
ନିଜ ପତି ବେନି ଆନନ୍ଦ ହୋଇଣ ରହିବ ଅମର ମଣ୍ଡଳ ॥୮୯॥

ସନ୍ତୋଷେ ଯମ ନିଜପୁରେ ଚଳିଲେ ସାବିତ୍ରୀ ବାହୁଡ଼ି ଅଇଲେ
ନିଜ ପତି ପ୍ରାଣ ସତ୍ୟବନ୍ତ ପିଣ୍ଡେ ସତ୍ୱରେଣ ଆଣି ପୁରିଲେ
ଚେତନା, ପାଇଣ ସତ୍ୟବନ୍ତ ଉଠି
ହାଇ ମାରିଣ ଅଙ୍ଗ ମୋଡ଼ି ବସିଲେ କରେଣ' ଦଳି ବେନି ଦୃଷ୍ଟି ॥୯୦॥

ସାବିତ୍ରୀଙ୍କି କହେ ବଡ଼ି ନିଦ୍ରା ଗଲି କମ୍ପାଇଁ ନ ଚେତାଇଲ ମୋତେ
ସପନେ ଦେଖିଲି ଯମ ନେଉଥିଲା ପ୍ରସନ୍ନେ ଆଣିଦେଲା ମୋତେ
ସାବିତ୍ରୀ, ଶୁଣି ହସନ୍ତି ହସ ହସ
ଏହି କାରଣେ ତୁମ୍ଭଙ୍କୁ ନ ଚେତାଇଲି ନିଦ୍ରା ଭାଙ୍ଗିଲେ ବଡ଼ ଦୋଷ ॥୯୧॥

ଶାଶୁ ଶ୍ୱଶୁରେ ଅନେକ ଲୋଡ଼ୁଥିବେ କ୍ଷୁଧାରେ ହୋଇଣ ଆରତ
ଫଳମୂଳ କିଛି ଆଣିଅଛି ମୁହିଁ ଉଠିବା ହେଉ ସେ ତୁରିତ
ସାବିତ୍ରୀ, ଆଲିଙ୍ଗନ କରି ଚେତାଇଲେ
ପତି ପତ୍ନୀ ବେନି ଆନନ୍ଦ ହୋଇଣ ସ୍ୱସ୍ଥାନେ ଯାଇଣ ମିଳିଲେ ॥୯୨॥

ଦେଖନ୍ତି ପିତାଜନଙ୍କ ସନ୍ନିଧରେ ପାଇଛନ୍ତି ଦିବ୍ୟଲୋଚନ
ପୁତ୍ର ବଧୂଙ୍କୁ ସେ ଦେଖିଣ ଆନନ୍ଦ ସତ୍ୟବନ୍ତ କଲେ ଦର୍ଶନ
ସାବିତ୍ରୀ, ଶାଶୁ ଶ୍ୱଶୁର ପାଦେ ସେବି
ଫଳ ଭୋଜନେ ନିଶା ସୁଖେ ବଞ୍ଚିଲେ ଉଦୟ ହେଲେ ଆସି ରବି ॥୯୩॥

---

୧। ପ. ଅର୍ଣ୍ଣିତା
୨। ପ. କରେଣ
୩। ପ. କେତେ
୪। ପ. ନାସୀ

ନାରଦ ମହାମୁନି[1] ତହିଁ ପ୍ରବେଶ ସେ ଦ୍ୟୁମତ୍ସେନ ନୃପବର
ପତ୍ନୀ ପୁତ୍ରବଧୂ ସଙ୍ଗତେ ଭେଟିଣ ପୂଜିଲେ ମୁନିଙ୍କ ପୟର
ସନ୍ତୋଷେ, ନାରଦ ତହିଁରେ ବସିଲେ
ସାବିତ୍ରୀ ଯମ ପ୍ରସ୍ତାବ[2] ମାନ ସବୁ ବିସ୍ତାର କରିଣ କହିଲେ ॥୪୪॥

ଯମନଗରୁଁ[3] ଭର୍ତ୍ତେ ନେଇ ଆଇଲେ ସେ ସତ୍ୟବନ୍ତ[4] ପାଏ ଜୀବନ
ଦ୍ୟୁମତ୍ସେନ ରାଜା ରାଜ୍ୟ ଭୁଞ୍ଜି[5] ଚଳାଇ ବାଜିଙ୍କୁ କରିବେ ଦମନ
ଏମନ୍ତ କହି ନାରଦ ଚଳିଂ ଗଲେ
ଏଣୁ ସମଏ ସୁଅଙ୍ଗ ଦେଶ ମନ୍ତ୍ରୀ ସଦ୍ୟ ସନ୍ନିଧରେ ମିଳିଲେ ॥୪୫॥

ନୃପତି ଚରଣେ ପ୍ରସନ୍ନ କରିଣ କରିରାଜ ଛନ୍ଦେ ବସାଇ
ମହା ଉତ୍ସବେ ରାଜ୍ୟକୁ ନେଇଗଲେ ଶ୍ୱେତଛତ୍ର[6] ଶିରେ ଧରାଇ
ରାଜନ, ଲଭିଲେ ପୁଣ ନିଜ ଦେଶ
ନିଷ୍କଣ୍ଟକ ହୋଇ ତହିଁରେ ରାଜ୍ୟ କଲେ ସକଳେ ହୋଇଲେ ହରଷ[7] ॥୪୬॥

ପତିବ୍ରତାଙ୍କ ପଣବ୍ରତ ହେ କୁରୁ ପତିବ୍ରତା ନାମ ଏ ବନ
ପୂର୍ବେ ବିଧାତା ଏମନ୍ତ ଆଜ୍ଞା ଦେଲେ କେ ତାହା କରିବଟି ଆନ
ରାଜନ, ଏ ବନରେ ଏବେ ରହିବା
ଦ୍ରବ୍ୟ ଫଳମୂଳ ଲୋଡିଲେ ଆନନ୍ଦେଣ ଉନ ହରିବା ॥୪୭॥

ମାରକଣ୍ଡ ଚଳ୍ହିଂ ଶୁଣି ଧର୍ମସୁତ ପର୍ଣ୍ଣଶାଳାଁ[8] ତହିଁ ରହିଲେ
ସକଳ ଋଷିଙ୍କ ସଙ୍ଗରେ ଭେଟିଣ ଅତି ତୋଷେ ଦିନ ବଞ୍ଚିଲେ
ଏମନ୍ତେ, କେତେ ସମୟ ଗଲା ତହିଁ
ବନରେ ବହର ଗଣ୍ଡା କାହ୍ନିଁ ମାତ୍ର ଫଳ ଭୋଜନ କଲେ କାନ୍ତିଁ[9] ॥୪୮॥

---

୧। ଖ. ଦ୍ୟୁମ୍ନଦେବ
୨। ଘ. ପ୍ରସ୍ତାପ
୩। ଖ. ଯମବରୁ
୪। ଘ. ସତ୍ୟବନ୍ତ
୫। ଘ: ଭୁଞ୍ଜିଣ
୬। ଘ. ଶ୍ୱେତଛତ୍ର
୭। ଘ. ସନ୍ତୋଷ
୮। ଘ. ପୂର୍ଣ୍ଣପାଳା
୯। କ. ପୋଥିରେ ୪୭ରୁ ୪୮ ପଦ୍ୟର ପାଠ ନାହିଁ

ଏମନ୍ତେ ପାଣ୍ଡବେ ବନେ ବିହରନ୍ତି ନାନା କଉତୁକେ[1] ଆନନ୍ଦ
ଦ୍ୱାଦଶ ବରଷ ହୋଇଲାକ ଶେଷ ଶାନ୍ତା କରିଣ ଆଢକନ ।
ସୁଜନେ, କ୍ଷମା କରିବା ମୋର ଦୋଷ[2]
ତୁମ୍ଭ ଭରସାରେ ବିରଚି[3] ଭାରତ କହଇ ବିଶ୍ୱମ୍ଭର ଦାସ ॥୪୧॥

## ଚତୁର୍ବିଂଶ ଛାନ୍ଦ

### ରାଗ—କଉଶିକ

ଏମନ୍ତେ ଶ୍ରୀକୃଷ୍ଣ ପ୍ରବେଶ ହୋଇଣ ଯୁଧିଷ୍ଠିରଙ୍କି କଲେ ଦ୍ରସନ
ଶୀଘ୍ର ଅର୍ଜୁନ ନକୁଳ ସହଦେବ ଦର୍ଶନ କରି ଭଗବାନ ।
କୃଷ୍ଣ ଆନନ୍ଦେ, ପାଣ୍ଡବଙ୍କ ପାଶେ ବସିଲେ
ବନବାସ ଶେଷ ହେଲା ପୀଚବାସ ଯୁଧିଷ୍ଠିର ଦେବ ଜଣାଇଲେ[4] ॥୧॥
ବଶିଷ୍ଠ ମାରକଣ୍ଡଙ୍କୁ ପଚାରନ୍ତି ପାଶେ ବସାଇ ଭଗବାନ
ବନବାସ ଶେଷ କଲେକ ପାଣ୍ଡବେ ଗୋପ୍ୟ ହେବେ କେଉଁ ଭୁବନ
ମାରକଣ୍ଡ ସେ, କହନ୍ତି ଶୁଣ ଚକ୍ରଧାରୀ[5]
ରଣସ୍ତମ୍ଭ ଗଡ ଅତ୍ୟନ୍ତ ଗୋପ୍ୟାନ ସୁବାହୁ ତହିଂ ଦଣ୍ଡଧାରୀ ॥୨॥
ସେ ଗଡ଼ ଭିତରେ କେହି ନ ପଶନ୍ତି ପାଣ୍ଡବଙ୍କୁ ତହିଁ ରଖିବା
ବଶିଷ୍ଠ ବୋଲନ୍ତି ଅପୂର୍ବ ସ୍ଥାନେକ[6] ମୋର ଚିତ୍ତଂ ଯେବେ ଶୁଣିମା
ବିଂଧ୍ୟଗିରିର ପାଶରେ ବିଂଧ୍ୟମାଳ ଦେଶ
ଅଗମ୍ୟ ସ୍ଥାନ ସେ[7] ବାସ କରିଅଛି ମେରୁ ଶୂଳ ନାମେ ରାକ୍ଷସ ॥୩॥
ଚଉଦ ଭୁବନ ଏକା ଏ ଜିଣିଲା ମେରୁଶୂଳ ତାର ଶରୀର
ଦେବ ସହସ୍ର ଶରେ ନ ଭେଦଇ ବଜ୍ର ତା ଅଙ୍ଗେ ହେବ ଚୂର
ମୋହା ଉପୁରେ, ତେବେ କମ୍ପନ୍ତି ତାର ନାମେ
କୋଦାଳ ଆୟୁଧ ନିଜ କରେ ଦେନି[8] ସକଳ ଜିଣିଲା ସଂଗ୍ରାମେ ॥୪॥

---

୧ । ଗ. ପାଣ୍ଡବେ ନାନା କଉତୁକେ ବିହରନ୍ତି ସେ ଆନନ୍ଦେ
ଘ. ଏହି ପ୍ରକାରେ ପାଣ୍ଡବେ କଉତୁକେ ବନେ ବିହରନ୍ତି
୨ । ଙ. ଦମ୍
୩ । ଘ. ବିରଚି ଭାରତ
୪ । କ ଗ. ପୋଥିରେ ଏ ଧାଡ଼ି ନାହିଁ
୫ । ଘ. ଚକ୍ରଧର
୬ । ଖ. ଥାନେକ
୭ । ଖ. ଥାନ ବାସ କରିଅଛି ସେ
୮ । ଘ. ଧରି

ମେରୁଶୃଙ୍ଗ ମାର ନସ୍ତ ନ୍ତ କରଣ ପାଣ୍ଡବଙ୍କୁ ଚହ୍ନିରେ ରଖି[1]
ସହଦେବ କହେ[2] ଯାହା ସେ କହିଲ ପ୍ରଚକ୍ଷେ ଏହ୍ଣଷଣି ଦେଖ
ମାକଣ୍ଡ ନାମେଣ ସୁବଣ୍ଡ
ତ୍ରିପୁର ମୋହିନୀ ନାମରେ ତାହାର ଅତ୍ୟନ୍ତ ସୁନ୍ଦର ଦୋହିତା[3] ॥୫॥

ଦୁର୍ବାସା[4] ଯାଇ ମିଳଲେ ତାର ପୁରେ[5] ଦେଖି ଦାନବ[6] ପୂଜା କଲ
ମୋର ଦୋହିତା[7] ଅନୁରୂପେ ବର ଗୋଟିଏ କରବା ବୋଇଲ
ତୋଷ ହୋଇଣ କହନ୍ତି ତାଙ୍କୁ ତପିବର
କାର୍ତ୍ତିକେଶ୍ୱର ନାମରେ ମହାଷଟି ମହାଦେବଙ୍କର କୁମର[8] ॥୬॥

ଅତ ସୁନ୍ଦର ସୁକୁମାର ଶରୀର କନ୍ୟାକୁ ସେହି ଅନୁରୂପ
ତୋର ଆଜ୍ଞା ଦେଲେ ଆଣିମା[9] ତାହାଙ୍କୁ ଶୁଣି ସନ୍ତୋଷ ଜଣପ
ତାଙ୍କୁ କହଇ ବହନ ଯାଇଁ ଆଣ ବର
ତ୍ରିପୁର ମୋହିମାକ ବିଭା କରିବ[10] ଅତ ଉଦ୍ଧବ[11] ମୋର ପୁର ॥୭॥

ମେରୁ ଶୃଙ୍ଗ ଚହ୍ନଂ ଏମନ୍ତ ଶୁଣିଣ ସତ୍ୱରେ ଦୁର୍ବାସା[12] ଚଳିଲେ
ମନ୍ଦର ପର୍ବତ ନିକଟେ ତାହାଙ୍କୁ ନାରଦେ ଆସନ୍ତେ ଦେଖିଲେ
ସର୍ବ ବୃତ୍ତାନ୍ତ, ଦୁର୍ବାସା[13] କହିଲେ ତାହାଙ୍କୁ
ତ୍ରିପୁର ମୋହିନୀ କନ୍ୟା ବିଭା ଅର୍ଥେ ଆଣି ମୁଂ କାର୍ତ୍ତିକେଶ୍ୱରଙ୍କୁ ॥୮॥

---

୧ । ପ. ଚହ୍ନଂରେ ପାଣ୍ଡବଙ୍କୁ ରଖି
୨ । ପ. ଅଧିକ
୩ । ଖ. ଦୁହିତା
୪ । ଖ. ଦୁର୍ବାଶା
ପ. ଦୁର୍ବାସା
୫ । ପ. ସେ
୬ । ପ. ବାଦବ
୭ । ଘ. ଦୋହିତା
ପ. ଦୁହିତା
୮ । ପ. କୁମାର
୯ । ପ. ଅଣିମା
୧୦ । ଖ. କରବା
୧୧ । ପ. ହଇବେ
୧୨ । ପ. ଦୁର୍ବାସା
୧୩ । ପ. ଦୁର୍ବାସା

ଏମନ୍ତ କହି ଦୁର୍ବାସା[1] ଚଳନ୍ତୁଂ ଗଲେ ନାରଦ ଚଳିଲେ ବହନ
ବଂଶମାନ ଦେଶେ ପ୍ରବେଶ ହୋଇଲେ ତ୍ରିପୁର ମୋହିନୀ ସଦନ
ଦେଖି ସୁନ୍ଦରୀ, ଋଷିଙ୍କ ପାଦେ ପ୍ରଣମିଲେ
କରଯୋଡ଼ି ବୋଲେ କେବଣ ନିମିତ୍ତେ[2] ମୋ ପୁରେ ଆସିବା ହୋଇଲେ ॥୯॥

ନାରଦ କହନ୍ତି[3] ତୁମ୍ଭର ନିମିତ୍ତେ[4] ଅପୂର୍ବ ବର କରିଥିଲୁଂ
ଦୁର୍ବାସା[5] କାର୍ତ୍ତିକେଶ୍ବର ଆଣିଗଲେ ପଥରେ ଏମନ୍ତ ଶୁଣିଲୁଂ
ଜଟା ମୁଣ୍ଡରେ, ଅଙ୍ଗେ ବଭୂତ ଭୂଷଣ[6]
ଷଡ଼ ଗୋଟା ମୁଣ୍ଡ ବାରଗୋଟା ହସ୍ତ ବେନି ଗୋଟି ମାତ୍ର ଚରଣ ॥୧୦॥

ତାହାର ପିତା ଅଟନ୍ତି ମହାଦେବ[7] ବୃଷଭ ଗୋଟିଏ ଚଢ଼ଇ
ସେହି ଅନୁରୂପେ[8] ତା ପୁତ୍ର କାର୍ତ୍ତିକ ବାହାନ ମୟୂର ଚଢ଼ଇ
ଏବେ ଶୁଣ ତୁ ଆମ୍ଭେ କରିଛୁଂ ଯେଉଁ ବର
ଦ୍ୱାରକା ନଗ୍ରରେ ବ୍ରହ୍ମାଣ୍ଡ କରତା ଦେବତା ଯାର ପରିସ୍ବର ॥୧୧॥

ଶ୍ରୀକୃଷ୍ଣ ମହିମା କେ କହି ପାରିବ କମଳା ଯାହାର ଯୁବତୀ
ତାଙ୍କର ନନ୍ଦନ ନାମତା ପ୍ରଦ୍ୟୁମ୍ନ ସାକ୍ଷାତ ମଦନ ମୂରତି
ତାଙ୍କ ସ୍ବରୂପ, ଦେଖରେ ତ୍ରିପୁର ମୋହିନୀ
ଲକ୍ଷପଟେ କାମ ରୂପ ଦେଖି କାମା ମୋହରେ ପଡ଼ିଲା ଅବନି ॥୧୨॥

ନାରଦ ତାହାକୁ ସଚେତ କରନ୍ତେ ଧଇଲା ମୁନିଙ୍କ ଚରଣ
ମୋ ଠାରେ ଆପଣ ଅନୁଗ୍ରହ[9] କରି ମୋ ପ୍ରାଣ ପତି ବେଗେ ଆଣ
ସତ୍ୟ କହୁଛି, କେବେ କାର୍ତ୍ତିକ ନ ବରିବ
ଆପଣ ଜନମ୍ବ ଜଳେ କାମ ଚିନ୍ତା ନଷ୍ଟଏ ଯୌବନ ତେଜିବ ॥୧୩॥

---

୧ । ଘ. ଦୁର୍ବାସ୍ବା
୨ । ଘ. ନିମିତ୍ୟେ
୩ । ଘ. ନାରଦେ ବୋଲନ୍ତି
୪ । ଘ. ନିମିତ୍ୟେ
୫ । ଘ. ଦୁର୍ବାଶା
୬ । ଘ. ଭସ୍ମଭୂଷଣ
୭ । ଘ. ଲିଙ୍ଗେଲା
୮ । ଘ. ଅନୁଚମେ
୯ । ଘ. ଅନୁଗ୍ରହି

ଶୁଣି ନାରଦେ ସନ୍ତୋଷେ ଚନ୍ଦ୍ରେ ଗଲେ ଦ୍ୱାରକା ହୋଇଲେ ପ୍ରବେଶ
ପ୍ରଦ୍ୟୁମ୍ନଙ୍କୁ କହି ଯେବଣ ଆସନ୍ତ ବିମାନ ଉଡ଼ାଇ ଆକାଶ
ଏବେ ଶୁଣିମା, ଦୁର୍ବାସା[1] କଇଳାସ ଗଲେ
କାର୍ତ୍ତିକେଶ୍ୱରଙ୍କୁ ବରବେଶ କରି ସଭିରେଣ ଘେନ ଅଇଲେ ॥୧୩॥

ଦେଖି ହେରମ୍ବ ନ ଆନନ୍ଦ ହୋଇଣ ଅତ୍ୟନ୍ତ ଉତ୍ସବ[2] ନଗ୍ରରେ
କାର୍ତ୍ତିକେଶ୍ୱରଙ୍କୁ ବରଣ କରଣ[3] ବସାଇଲେ ସେ ବେଦୀକାରେ
ପୁଣ କନ୍ୟାଙ୍କୁ, ସନ୍ତରେ ଜବାଇ ସୁବେଶ
ଅନ୍ତଂଗ୍ୟଂ ଗ୍ରଜା ଅର୍ଥରେ ଦେବ ଗୃହେ କରାଇଲେ ନେଇ ପ୍ରବେଶ ॥୧୫॥

ତ୍ରିପୁର ମୋହିନୀ ବ୍ୟାକୁଳ ହୁଅଇ ନାରଦ ବିଳମ୍ବ ଦେଖିଣ
ମଙ୍ଗଳାଙ୍କୁ ସ୍ତୁତି କରେ କୃଷ୍ଣପୁତ୍ର ପ୍ରାପତ କର ପ୍ରସନ୍ନେଣ
ଏହି ସମୟ, ଆକାଶେ ବିମାନ ଦିଶିଲା
ଦେଖୁଂ ଦେଖୁଂ ବାଳୀ ସମିପେ ଆସିଣ ପ୍ରଦ୍ୟୁମ୍ନ ପ୍ରବେଶ ହୋଇଲା ॥୧୬॥

ତ୍ରିପୁର ମୋହିନୀ ଆନନ୍ଦ ହୋଇଣ କୁସୁମମାଳ ଘେନ କରେ
ବରଣ ବିଧିରେ ଲମ୍ବାଇଲେ ନେଇ ଶ୍ରୀକୃଷ୍ଣ ନନ୍ଦନ ଗଳାରେ
କର ଧରିଣ, କୋଳେ ବସାଇଲେ ପ୍ରଦ୍ୟୁମ୍ନ
ନାରଦେ ବୋଇଲେ କ କଥା ପଡ଼ଇ ବୁଝିବା ଅସୁର ସଦନ ॥୧୭॥

ବର କନ୍ୟା ଘେନ ଦ୍ୱାରକା ନଗ୍ରରେ ବହନ ଏବେ ଯାଅ ଚଳି[4]
ଚନ୍ଦ୍ରେ ପ୍ରଦ୍ୟୁମ୍ନ ଆକାଶେ ରଥ ବାହି ଦେଖ ନିକଟେ[5] ଆସି ମିଳି
ସର୍ବେ ଦେଖନ୍ତି, ପ୍ରଦ୍ୟୁମ୍ନ ଆସି ପରବେଶ
ତ୍ରିପୁର ମୋହିନୀ କନ୍ୟା କୋଳେ ଅଛି ମୋହୁଛି ସକଳ ମାନସ ।୧୮।

---

୧ । ପା. ଦୁର୍ବାସା
୨ । ପା. ଉତ୍ସବ
୩ । ପା. ବରବେଶ କରି
୪ । ପା. ଯାଅ ଏବେ
୫ । ପା. କୃଷ୍ଣ

ସକଳେ ସହଦେବଙ୍କୁ ପ୍ରଶଂସନ୍ତି ଧନ୍ୟ ଭୂମ୍ବର ମନ୍ତ୍ରୀପଣ
ଅସ୍ତ୍ରଣୀ[1] ଅଦୃଷ୍ଟି ଯାହା ସେ କହିଲ ଆସି ଭେଟିଲ୍ଲ ତତକ୍ଷଣ
ପଞ୍ଚ ପାଣ୍ଡବେ, ଶ୍ରୀକୃଷ୍ଣ ଭୂପେ ଋଷିଗଣ
ରଥରୁ ଓହ୍ଲାଇ ଦର୍ଶନ କରନ୍ତି ପ୍ରଦ୍ୟୁମ୍ନ ସକଳ ଚରଣ ॥୧୯॥

ଶ୍ରୀକୃଷ୍ଣ ବୋଇଲେ ବଧିକୁ ଘେନିଣ ଯାଅ ତୁ ଦ୍ୱାରାବତୀ ପୁର
ଅର୍ଜୁନଙ୍କୁ ଘେନ ଜଗିଲେ ଆମ୍ଭେ ଯେବେ ସେ ଆସିବ ଅସୁର
ଆଜ୍ଞା ପାଇଣ ପ୍ରଦ୍ୟୁମ୍ନ ରଥେ ଗଲେ ଚଳି
ହିପୁର[2] ମୋହ୍ନମା କନ୍ୟାକୁ ଘେନିଣ ଦ୍ୱାରକା ପୁରେ ଯାଇ ମିଳି ॥୨୦॥

ଶ୍ରୀକୃଷ୍ଣ ଅର୍ଜୁନ ସଙ୍ଗେ ଘେନି କରି ରହିଲେ ସୁପ୍ରଚ୍ଛନ୍ନ[3] ଗରି
ଅସୁର ଆସିବା ପଥ ଜଗିଲେଣ ରହିଲେ ଧନୁଶର ଧରି
ଏବେ ଶୁଣିମା, ନାରଦ ମହର୍ଷି ଗଲେ
ମେରୁଶୃଙ୍ଗ ରତ୍ନ ବେଦୀକାରେ ଯାଇ ଭୂତଳେ ପ୍ରବେଶ ହୋଇଲେ ॥୨୧॥

ଏ ସମଏ କନ୍ୟା ନେଲା ନେଲା ବୋଲି ପଡିଲା ଆସି ଚହୁଂ ପୁର
କେ ନେଲା କେହି ଜାହାକୁ ନ ଦେଖିନାହିଁ କହନ୍ତି[4] ନାରଦ ତପସ୍ୱୀ
ଆମ୍ଭେ ପଚାରିଣ, ଦେଖିଲୁ ଶ୍ରୀକୃଷ୍ଣ ନନ୍ଦନ
ହିପୁର ମୋହ୍ନମା କନ୍ୟାକୁ ରଥରେ ବସାଇ ନେଉଛନ୍ତି ପ୍ରଦ୍ୟୁମ୍ନ ॥୨୨॥

ପୁଣି କାର୍ତ୍ତିକଙ୍କୁ ଅନାଇ କହନ୍ତି ଭୂମ୍ବର ଏକ ଶତମୁଣ
ବିଶ୍ୱ ହେଲାଠାରୁ କେ ଜାହାର କନ୍ୟା ହରିଣ ଘେନିଯାଏ ପୁଣ[5]
ଏଡେ କଥାଏ, କେମନ୍ତ ପ୍ରକାରେ ସମ୍ଭବ
ବିଶ୍ୱମୂର୍ତ୍ତି ବରବେଶ କରିଣ ଜାହାକୁ ତୁମ୍ଭେ ଲୁଚାଇବ ।୨୩।

ପଦୁନେ ମାରି ଆଣ ସେ କୃପାଣ ଜଠ ହେ ମେରୁଶୃଙ୍ଗ ସାର
ଭୂମ୍ବର ବଚନେ ଲଣ୍ଡଭଣ୍ଡ ହେଲେ ଦୁର୍ବାସା[6] ପ୍ରାଏ ତପିବର
ଏହେ ଶୁଣିଣ, କୋହାଳ ଧରି ନିଜ କରେ
ମେରୁଶୃଙ୍ଗ କୋଧେ ବାହାର ହୋଇଲା କାର୍ତ୍ତିକଙ୍କୁ ଘେନି ସଙ୍ଗରେ ।୨୪।

---

୧ । ପ. ଅନ୍ତ୍ରଣୀ
୨ । ପ. ହିପୁରନ୍ତ
୩ । ଛଦ୍ମେ
୪ । ପ. ବଳେଣ
୫ । ଗ. ଦୁର୍ବାସ
ପ. ଦୁର୍ବାସ

ପ୍ରଭଞ୍ଜ ବରଣ ମୟୂର ଚଢ଼ିଣ ବାହାର ହେଲେ ଷଡ଼ାନନ
ଡଉଁ କରେ ଶୂଳ କାର୍ତ୍ତିରେ ତ୍ରିଶୂଳ ସହସ୍ରମାନ ସେନ ପୁଣ[1]
ବେଗେ ଅଃସନ୍ତି, ତ୍ରିପୁରାନ୍ତକିର ପାଶରେ
କୃଷ୍ଣ[2] ଅର୍ଜୁନ ତାହାଙ୍କୁ ଦେଖି ସେ[3] ଧନୁ ନାରାଚ ଧଣ କରେ ॥୨୫॥

ଶର ପ୍ରହାରନ୍ତେ ଅସୁର ଅଙ୍ଗରେ ପଡ଼ଣ ପଡ଼ୁଛନ୍ତି ଝଁଡ଼
ମୟୂରକୁ ଦେଖି ଅନ୍ତରମ୍ ଭରେ[4] ଗରୁଡ଼ କରେ ଦର୍ପ ରଡ଼
ଦେଖି ମୟୂର, କାର୍ତ୍ତିକ ସେନ ପଳାଇଲେ[5]
କୁମାର ଯେତେ ରୂପ ତାଙ୍କୁ ଝୁଲଲେ ଗରୁଡ଼ ଘୁମ୍ମକୁ ନଇଲେ[6] ॥୨୬॥

ସମ୍ମୁଖେ କାର୍ତ୍ତିକ ମୟୂରକୁ ଛାଡ଼ ଶ୍ରୀକୃଷ୍ଣ ଘୁମ୍ମରେ ପ୍ରବେଶ
ଧନୁଶର ଧରି ଶ୍ରୀକୃଷ୍ଣ ସଙ୍ଗତେ ସମର କଲେ ମହାରୋଷ
ଇନ୍ଦ୍ର ନନ୍ଦନ, ମେରୁଶୂଳକୁ ଉଗାଳିଲେ
ଗାଣ୍ଡିମ ଧନୁରେ ଦେବବରେ ଯୋଡ଼ି ଦୈତ୍ୟ ଅଙ୍ଗରେ ପ୍ରହାରିଲେ ॥୨୭॥

ଅସଂଖ୍ୟ ମହାଘୋର[7] ଯୁଦ୍ଧ[8] ହୋଇଲା ଦେବ ମାନବେ ଅଗୋଚର
ଏମନ୍ତ ଦେଖି କଇଳାସ ଭୁବନେ ଗଲେ ଦୁର୍ବାଶ୍ୟା[9] ତପିବର
କୃଷ୍ଣ ଚରଣେ, ନିରତେ ରହୁ ମୋର ଆଶ
କୋଟି ଅପ୍ରାଧ କ୍ଷମା ମୋର କରିବେ[10] କହଇ ବିଶ୍ୱମ୍ଭର ଦାସ ॥୨୮॥

---

୧ । ପ. ଡାହୁଁରେ ଶର ସଂଧାନ
୨ । ପ. ଶ୍ରୀକୃଷ୍ଣ
୩ । ପ. ଦେଖିଣ
୪ । ଖ. ଭୟ
୫ । ଖ. ପଳାଇଲା
୬ । ଘ. ନଇଲେ
୭ । ଗ. ମୋହାଘୋର
୮ । ପ. ଯୁଧ
୯ । ପ. ଦୁର୍ବାଶ୍ୱା
୧୦ । ପ. ମୋର କ୍ଷମା କରିବା

## ପଞ୍ଚବିଂଶ ଛାନ୍ଦ

### ରାଗ—କଳସା

ଦୁର୍ବାସା[1] ମହର୍ଷି କଇଳାସରେ ସତ୍ବରେ ପ୍ରବେଶ ହୋଇଲେ
ମହାଦେବଙ୍କ ଆଗରେ କହିଲେ
ମେରୁଶୃଙ୍ଗ ସୁତା ହିସ୍ପର ମୋହିନୀ କାର୍ତ୍ତିକେଶ୍ବର ବରିଲେ ହେ । ଶଙ୍କର
ଅମ୍ଭେ ଆସି କୁମାରୀ ଘେନିଗଲୁଂ ଶଂଙ୍ଖମାନ ଦେଶେ ବେଗେ ମିଳିଲୁଂ
ବରବେଶ କରି କାର୍ତ୍ତିକେଶ୍ବରଙ୍କୁ ବେଦୀଠାରେ ବସାଇଲୁ ହେ, ଶଙ୍କର ।।୧।।
ଶ୍ରୀକୃଷ୍ଣ ନନ୍ଦନ ପ୍ରଦ୍ୟୁନ ଆସିଣ ବଳେ କନ୍ୟାକୁ ହରିନେଲା
ବହୁ ଲଜ୍ୟା ଭଙ୍ଗରେ ନମ୍ରକଲା
କୋପେ ମେରୁଶୃଙ୍ଗ କାର୍ତ୍ତିକଙ୍କୁ ଘେନି ଦ୍ବାରିକାକୁ ସଜ ହେଲା ହେ, ଶଙ୍କର
କୃଷ୍ଣ ଅର୍ଜୁନଙ୍କୁ[2] ଘେନି ସଙ୍ଗରେ ବେଗେ ଓଗାଳିଲେ ଆସି ପଥରେ[3]
ଧନୁ ଧରିଣ ସମର କରନ୍ତି କାର୍ତ୍ତିକ ସ୍ବାର ମଙ୍ଗରେ ହେ, ଶଙ୍କର ।। ୨ ।।
ନନ୍ଦୀ ଭୃକୁଟିକ ବୃତ୍ତାଂ ସଦାନନ୍ଦ ଅତି କୋପରେ ଆଜ୍ଞା ଦେଲେ
ମୋର ସୈନ୍ୟ ବେଗେ ସାଜ ବୋଇଲେ
ପିନାକ ଧନୁ ଅକ୍ଷୟ ତୋଣ କଟି ବୃଷଭରେ ବିଜେ କଲେ ସେ, ଶଙ୍କର
ତେତିଶ କୋଟି ଶିବଗଣ ସାଥୀ, ଡାକ[4] ଡମ୍ବରୁ ଘନଘୋର ବାଜ
ନନ୍ଦୀ ଭୃକୁଟି ଗଜାନନ ସଙ୍ଗତେ ଗଲେ କଇଳାସ ତେଜି ହେ ସୁଜନେ ।।୩।।
ଦୁର୍ବାସା[5] ଋଷି ଆଗଭର ହୋଇଣ ପଥ କଢ଼ାଇ ଘେନିଗଲେ
ନାରଦ ମହାମୁନି ତାହା[6] ଦେଖିଲେ
ବଡ଼ କଉତୁକ ଦେଖିବା ଏଠାରେ ଈଶ୍ବର ବିଜୟେ କଲେ ହେ ସୁଜନେ
କୃଷ୍ଣ ଛାମୁରେ ଯାଇଣ କହନ୍ତି ମହାକ୍ରୋଧେ ତ ଶଙ୍କର[7] ଆସନ୍ତି
ଦୁର୍ବାସା[8] ମହର୍ଷି ଆଗ ହୋଇଣ ପଥ କଢାଇ ଆଣନ୍ତି ହେ ସୁଜନେ[9] ।।୪।।

---

୧ । ପ. ଦୁର୍ବାଶା
୨ । ପ. ଅର୍ଜ୍ଜୁନ
୩ । ପ. ଆସି ଓଗାଳିଲେ ତାଙ୍କୁ
୪ । ପ. ଢାକ
୫ । ପ. ଦୁର୍ବ୍ବାଷା
୬ । ପ. ତା
୭ । ପ. ଈଶ୍ବର
୮ । ପ. ଦୁର୍ବାଷା
୯ । ପ: ଶ୍ରୀହରି

ମାର ଶିବଗଣ ଶଙ୍କର ସହିତେ ଆସ ହେ ଶାର[୧] ଅରଜୁନ
ତୁମ୍ଭେ ଶିଖା ଶିବଗଣଙ୍କ ଦଳନ
ଏମନ୍ତ କହିଣ ଶଙ୍ଖ ବଜାଇଣ ନାଚନ୍ତି ବ୍ରହ୍ମାନନ୍ଦନ ହେ ସୁଜନେ
ଶିବ ହୋଇଲେ ତହିଁରେ ପ୍ରବେଶ ଧନୁଶର ରଖିଣ ପୀତବାସ
ଅର୍ଜୁନଙ୍କୁ ସଙ୍ଗେ ଘେନିଣ ପ୍ରସନ୍ନ କଲେକ ଯାଇ ବ୍ୟୋମକେଶ ॥୫॥

ଶଙ୍କର ବୋଲନ୍ତି[?] ଶୁଣ ପୀତାମ୍ବର କେମନ୍ତ ଚରିତ ତୁମ୍ଭର
ମେରୁଶୃଙ୍ଗ ଅଣାଇ ପୁଅ ମୋର
ତ୍ରିପୁର ମୋହନୀ ନାମେଣ କୁମାରୀ ସମର୍ପିବାକୁ ବାହାର[୨] ହେ ଅଚ୍ୟୁତ[୩]
ତୁମ୍ଭ ପୁତ୍ର ପ୍ରଦ୍ୟୁମ୍ନ ତହିଁ ଗଲା, ବଳେ କନ୍ୟାକୁ ଘେନି ପଳାଇଲା
ତୁମ୍ଭେ ବାନ୍ଧ ଜଗି ସମର କରୁଛ କହିଁ ଧର୍ମକୁ ଅଇଲା ହେ ଅର୍ଜୁନ ॥୬॥

ଶ୍ରୀକୃଷ୍ଣ ବୋଇଲେ[୪] ବୁଝିବା ହେଉ ସେ କିଛି ଦୋଷ ନାହିଁ ଆମ୍ଭର
ଦୂତ ପେଷିଲ ଦର୍ପର କୁମାରୀ
ପ୍ରଦ୍ୟୁମ୍ନଙ୍କୁ ବଳେ ଘେନାଇଁ ଆଣିଣ ପୁଷ୍ପମାଳା ଦେଇ ବର ହେ, ଶଙ୍କର
ମେରୁଶୃଙ୍ଗକୁ ଘେନି ତୁମ୍ଭ ଦୂତ ଦ୍ୱାରକାକୁ ଚଳନ୍ତି କୋପଚିତ
ଆମ୍ଭେ ଓଗାଳିଲେ ସମର କରନ୍ତି ଦୋଷ କାହାର ହେବ ତ ହେ ଶଙ୍କର ॥୭॥

ଶୁଣି ସଦାନନ୍ଦ ଆନନ୍ଦ ହୋଇଣ କାର୍ତ୍ତିକଙ୍କୁ କହେ ଉତ୍ତର
ତୁମ୍ଭେ ନ ବୁଝି କଲ ତ ସମର
କନ୍ୟାଏ ପ୍ରଦ୍ୟୁମ୍ନଙ୍କୁ ଯେବେ ବଶଲ[୫] ସେ କାହିଁ ହେଲା ତୁମ୍ଭର[୬] ହେ ନନ୍ଦନ
ଆମ୍ଭେ ଏକ ଆତ୍ମା ସେ ହରିହର, ତୁମ୍ଭେ କମାଇଁ କରୁଛ ଅନ୍ତର
ତ୍ରିଜଗ ସ୍ଥିର ପାଇଁ ଅପ୍ରୀତି ହୋଇବା ଦଶିବନା ଅସୁନ୍ଦର ହେ ନନ୍ଦନ ॥୮॥

---

୧ । ପ. ହେଲେ
୨ । ପ. ତାହାର
୩ । ପ. ଅଚ୍ୟୁତ
୪ । ପ. ବୋଲନ୍ତି
୫ । ପ. କନ୍ୟା ଇଚ୍ଛାଏ ପ୍ରଦ୍ୟୁମ୍ନଙ୍କୁ
୬ । ପ. ସେହି ତ ହେଲା ଆମ୍ଭର

ଏତେ କହି କାର୍ତ୍ତିକଙ୍କୁ କୋଳେ ଧରି କଇଳାସକୁ ହର ଗଲେ
ଦେଖି ଶ୍ରୀକୃଷ୍ଣ ହରଷ ହୋଇଲେ
ମେରୁଶୃଙ୍ଗ ଦେଖି କୋହାଳ ବୁଲାଇ[1] ଆସି ସମ୍ମୁଖରେ ମିଳିଲେ ହେ ସୁଜନେ,
କୋପ ଭରେଣ ପ୍ରଚଣ୍ଡ ଗର୍ଜନ ଶୁଣି ଚମକେ ଚଉଦ ଭୁବନ
ମେରୁ ତୁଲ୍ୟ କରି କାୟା ବଢ଼ାଇଲା କରି ଅତି କୋପ ମନ ହେ ସୁଜନେ ॥୯॥

ଦେଖି ଅର୍ଜୁନ ଶ୍ରୀକୃଷ୍ଣ ଉଭୟ କରି ଗିରି ଶିଖରେଣ[2] ଉଠିଲେ
ଦୈତ୍ୟ ଉପରେ ଶର ବୃଷ୍ଟି କଲେ
ଯେତେକ ଶର ପେଷନ୍ତି[3] କୃଷ୍ଣ ପାର୍ଥ ସକଳେ ଚୂର୍ଣ୍ଣ ହୋଇଲେ ହେ, ସୁଜନେ॥
ଦୈତ୍ୟ ଏବେ ଅଟଇ ବଳଆର[4] ଇନ୍ଦ୍ରବରେ ବଜ୍ର ଛାର[5] ଶ ର
ଚଉଦ ଭୁବନ ଭସ୍ମଏ ଗମଇ ଜଣିଲା ସକଳ ସାର ହେ, ସୁଜନେ ॥ ୧୦ ॥

ତେଣୁ ନର୍ଭଏ ଅଟଇ ମେରୁଶୃଙ୍ଗ ଝଷୀ ତାହାଙ୍କୁ ନାହିଁ ସମ
କରେ ଶ୍ରୀକୃଷ୍ଣ ଅର୍ଜୁନ ସଂଗ୍ରାମେ
ଆକାଶେ ସକଳ ଦେବେ ଦେଖୁଛନ୍ତି କେ ତାଙ୍କୁ ରଣେ ଜିଣିମ ହେ ସୁଜନେ ।
କୃଷ୍ଣ ଅର୍ଜୁନ ପେଷି ଦେବଶର, ନ ଭେଦଇ[6] ସେ ଦୈତ୍ୟର ଶରୀର[7]
କୋପରେ ଅର୍ଜୁନ କୋହାଳ ଛେଦିଲେ[8] ପେଷିଣ ଗନ୍ଧର୍ବାସ୍ତ୍ରଶର ହେ ସୁଜନେ ॥୧୧॥

ଦେଖି ମେରୁଶୃଙ୍ଗ ମହାକ୍ରୋଧ ହୋଇ କୋହାଳ ଶର ଥିଲା କରେ
ନେଇଁ ମାଇଲା ପର୍ବତ ଉପରେ
ତୋଳି ପର୍ବତ ବୁଲାଇ ଫିଙ୍ଗି ଦେଲା ପଡ଼େ ଦଶ ଯୋଜନରେ ହେ ସୁଜନେ
ଅର୍ଜୁନ ବାହୁଡ଼ି ଆସନ୍ତି, ମେରୁଶୃଙ୍ଗ ସମ୍ମୁଖରେ ସେ ମିଳନ୍ତି
କୋପେଣ[9] ଅର୍ଜୁନ ସାଳବାଣ ପେଷି[10] ଦୈତ୍ୟର ଶିର ଛେଦନ୍ତି ହେ ସୁଜନେ ॥୧୨॥

---

୧ । ପ. ମେରୁଶୃଙ୍ଗ ଦେଖିଣ ଉଠିଲେ, କୋହାଳ ଆୟୁଧ ବୁଲାଇ ଆସୁ କୃଷ୍ଣ
୨ । ପ. ଶୀଖରେ
୩ । ପ. ହାଣନ୍ତି
୪ । ପ. ଅଟଇ ଏବେ
୫ । ପ. ତାର ବଜ୍ର
୬ । ପ. ଦୈତ୍ୟ ହୃଦର
୮ । ପ. ପେସିଲେ
୯ । ପ. କୋପେ
୧୦ । ପ. ପେସେଣ

ପ୍ରାଣ ପିବାଦେନେ ମେରୁଶୃଙ୍ଗ ଦଇତ୍ୟ ଗୁଞ୍ଜଳକ ସିଂହ'ରତ୍ତ

ମେରୁ ପୃଥ୍ୱୀରେ ପଡ଼ିଲାକ ଝଡ଼'

ଥର ଥର ହୋଇ କମ୍ପିଲା ଧରଣୀ ଦଇତ୍ୟ ହେଲା ଖଣ୍ଡେ ଖଣ୍ଡ ହେ, ସୁଜନେ ।

ଦେବଗଣ ଦେଖି ତୋଷ ହୋଇଲେ ପାର୍ଥଙ୍କ ଶିରେ ପୁଷ୍ପ ବୃଷ୍ଟି କଲେ

ଆଜନ୍ତୁ ଆମ୍ଭେ ସେ ନିଶ୍ଚିନ୍ତ ହୋଇଲୁଂ ଏମନ୍ତ ଭଣିଁ ବୋଇଲେ ହେ, ସୁଜନେ ॥ ୧୩ ॥

ଶ୍ରୀକୃଷ୍ଣ ଅର୍ଜୁନ ଆଲିଙ୍ଗନ କରି ବଦନେ ଦିଅନ୍ତି ଚୁମ୍ବନ

ଧନ୍ୟ ଧନ୍ୟ ତୁମ୍ଭେ ଦଇତ୍ୟ ଦଳନ

ଏହୁ କାଳେଣ ଅବତାର ହୋଇ, ଜିଣିଲି ତ୍ରିଭୁବନ ହେ, ଅର୍ଜୁନ ।

ଏବେ ବନ ଆଶ୍ରମେ ତୁମ୍ଭେ ଯାଅ, ଧର୍ମନନ୍ଦନଙ୍କ ପାଶେଁ ଜଣାଅ

ଆମ୍ଭେ ଦ୍ୱାରିକା ପୁରକୁ ଯାଉଛୁଂ ଆନନ୍ଦେ ତୁମ୍ଭେ ଥାଅ ହେ, ଅର୍ଜୁନ ॥ ୧୪ ॥

ଶୁଣି ଧନଞ୍ଜୟ ନମସ୍କାର କରି ବାହୁଡ଼ି ଆଶ୍ରମେ ପ୍ରବେଶ

ଭୁପନ କରି ଧର୍ମସୁତ ପାଶ

ସକଳେ ଭଣ୍ଡି ଅତି ତୋଷ ହୋଇଲେ ଶୁଣି ମେରୁଶୃଙ୍ଗ ନାଶ ହେ, ସୁଜନେ ।

ଦ୍ୱାରକାରେ ବିଜୟ ଦାମୋଦର, ବନ୍ଦ କରନ୍ତି ଭଣ୍ଡି କନ୍ୟାବର

ଦ୍ୱାରକାପୁରେଁ ସମସ୍ତେ ହେ ଆନନ୍ଦ ଗାନ କରନ୍ତି ବିଶ୍ୱମ୍ଭର ହେ ସୁଜନେ ॥ ୧୫ ॥

---

୧ । ପ. ଗୁଞ୍ଜଳ ଏକ

୨ । ପ. ଝାଡ଼

୩ । ପ. ଆସେ

୪ । ପ. ଦ୍ୱାରକାର

## ଷଷ୍ଟବିଂଶ ଛାନ୍ଦ

### ରାଗ—ରସକୋଇଲି

ପଞ୍ଚ ପାଣ୍ଡବେ ଦ୍ରୌପଦୀଙ୍କ[1] ସେନ  ଆବର ସଙ୍ଗେ ସର୍ବ ମହାମୁନ
ମଳୟ ବନ ତେଜଣ[2] ବହନ  ଦକ୍ଷିଣ ମାର୍ଗେ କଲେକ[3] ଗମନ ସେ
ଛଛେଦ ବନେ ମିଳଲେ ସେ[4]
ଧର୍ମ ନନ୍ଦନ ବଦନ ଶୁଣି କଣ ଅଙ୍ଗୀର ଋଷି କହିଲେ ସେ[5] ॥୧॥

ବଇଦର୍ଭ[6] ଦେଶେ ସୂର୍ଯ୍ୟ[7] କୂଳରେ  ବୀରସେନ ନାମ ମହୀପାଳରେ
ନଳ ବୋଲକଣ ତାର ନନ୍ଦନ  ଅତି ସୁନ୍ଦର ସେ ଜାଣି[9] ମଦନ ସେ
ଦମୟନ୍ତୀ[10] ନାମେ ନାରୀ ସେ
ସୁନ୍ଦର ପଣରେ କେହୁ ତ[11] ନୋହିବେ ଭୀମ ରାଜାର କୁମାରୀ ସେ ॥୨॥

ତାର ସ୍ୱୟମ୍ବରେ ସକଳ ଦେବେ  ନାଗ ନର ଋଷି[12] କପି ଦାନବେ
ଇଚ୍ଛାଏ ସୁନ୍ଦରୀ ନଳକୁ ବରି  ଲଭେ ସର୍ବେ ଗଲେ ସେ ପାଦାପୂଷ୍ପ ସେ
ଦେବତାଏ କୁଷ୍ଟ କଲେ ସେ
ପୁଷ୍କର ସଙ୍ଗେ ନଳ ପଶା ଖେଳଣ ସର୍ବ ସମ୍ପଦ[13] ହାରିଲେ ସେ ॥୩॥

---

୧। ଘ. ଦ୍ରୁପଦାଙ୍କି
୨। ଖ. ପତିବ୍ରତା ବନ ତେଜ
ଗ. ପବନ ତେଜି
ଘ. ମାର୍ଗରେ କଲେ
୩। ଖ. ଦ୍ୱୈତେଦ ବନେ କଲେ
ଘ. ଦକ୍ଷିଣ ମାର୍ଗରେ କଲେ
୪। ଖ. କେତେ ଦୂର ଚଳି ଗଲେ ଜେ
୫। ଖ. ବଇଶମ୍ପାୟନ ମହର୍ଷି ଧର୍ମପୁତ୍ର
ଛାମୁରେ ପୁଣ କହିଲେ ସେ
ଘ. ବଇଶମ୍ପାଏନ ମହର୍ଷି ଧର୍ମପୁତ୍ର
ଛାମୁରେ କହିଲେ ସେ
୬। ଙ୍କ ଘ ପ. ବଇଧର୍ବ
୭। ଖ. ସୂର୍ଯ୍ୟ
ଘ. ସୂର୍ଯ
୮। ଖ. କାମେଣ ତାଙ୍କର
ଘ. କାମଦେ ତାଙ୍କର
୯। ଖ. ସାକ୍ଷାତ
୧୦। ଘ. ଦମୟନ୍ତୀ
୧୧। ଗ. ପଣେ କେହୁ ସର
ଘ. ପଣ କେହୁ ସମ
୧୨। ଘ. ନର ବଳ ଋଷି
୧୩। ଗ. ସମ୍ପତ୍ତି

ବନେ ଭେଟିଲେ ଦମୟନ୍ତୀ ନଳ  ବହୁତ ଦୁଃଖେ ହୋଇଣ ଆକୁଳ
ଦମୟନ୍ତୀ ନଳ ଗୁଣ୍ଡ ବନରେ  ନଳ ରହିଲେ ଯାଇ ଅଯୋଧ୍ୟା ପୁରେ ସେ
ଦମୟନ୍ତୀ ପିତା ଭୁବନେ ଯେ
ପୁଣି ଶ୍ୟାମରାଜା ସ୍ୱୟମ୍ବର କଲେ ଆଇଲେ ସବେ ରାଜନ ସେ[1] ।।୪।।

ଅଯୋଧ୍ୟା ରାଜା ସଙ୍ଗେ ଗଲେ ନଳ  ଛନ୍ଦି[2] ଦମୟନ୍ତୀ ଦେଲେ ବହୁମାନ
ଏ ବନ ଏବେ ଅଚ୍ଛେଦ ଲୋଡ଼ନ୍ତି[3]  ଅଚ୍ଛେଦ ବନ ନାମ ଧାତା ଦେଲେ ସେ[4]
ଶୁଣି ଯୁଧିଷ୍ଠି ହରଷ ହେ
କର ଯୋଡ଼ିଣ ବୋଲନ୍ତି[5] ଏକ ମନେ ଶୁଣିମା ସର୍ବ ତାପସ[6] ହେ ।।୫।।

ବାର ବରଷ ବନବାସ କଲି[7]  ତୁମ୍ଭ ସଙ୍ଗତରେ ମୁହିଁ[8] ବଞ୍ଚିଲି
ଶାସ୍ତ୍ରର ଲୀଳା[9] ନାନା ରସ କଥା  ତୁମ୍ଭ ମୁଖୁ ଶୁଣି ହରିଲି[10] ବ୍ୟଥା ସେ
ବଡ଼ କୃପା ମତେ କଲ ସେ
କ୍ଷୁଧା କ୍ଲେଶ କିଛି ମନରେ ନ ଥିବ ମୋର ସଙ୍ଗରେ[11] ବୁଲିଲ ହେ ।।୬।।

---

୧ । କ. ସମସ୍ତେ ବରି ସେ କନ୍ୟାକୁ ଘେନି  ନଳକୁ ବରିବ ଜାଣିମ ଚିହ୍ନି ସେ
ଦେବତା କୁଟ କଲେ ଯେ
ପଞ୍ଚାନ୍ତି ସ୍ୱରୂପ ନଳକୁ କରିଣ ସଭା ତଳରେ ବସିଲେ ଯେ ।।
ପୂର୍ବେ ସେ ଇନ୍ଦ୍ର ଆଜ୍ଞା ପାଇ ନଳ, ଦମୟନ୍ତୀ ଆଗେ କହନ୍ତି ସକଳ
ସେଠାରେ ଦମୟନ୍ତୀ ତାଙ୍କୁ ଚାହିଁଲେ  ସଭାରେ ତୋତେ ବରିବ ବୋଇଲେ ସେ
ସତ୍ୟବ୍ରତ ଛନ୍ଦ ପାଳି ଜେ
ଭୁବନପୁର ଲୋକେ ତାବ ସ୍ୱୟମ୍ବରେ ଲୋଭେଣ ଅଛନ୍ତି ମିଳି ଯେ
ଦମୟନ୍ତୀ ସଭା ମଧ୍ୟେ ପ୍ରବେଶ  ନଳକୁ ଅନାଇଲେ ଚଉପାଶ
ଜାଣିଲେ ଦେବେ କୁଟ ଛନ୍ଦି କରି
ସ୍ୱରୂପ ହେଲେହେଁ ନଳକୁ ବରି ସେ ଲଜେ ସବେ ବାହୁଡ଼ିଲେ ଯେ
ତତ୍‌ସ୍ୱରୂପ ଧରି ସେ ନଳ ନୃପତି ଦମୟନ୍ତୀ ବରି ହେଲେ ଯେ  [ଅଧିକ ପାଠ]

୨ । କ. ଛନ୍ଦି
ଘ. ଚିହ୍ନା ଦମୟନ୍ତୀ
୩ । କ. ଏ ବନେ ଯେଣୁ ଅଚ୍ଛେଦ ହୋଇଲେ
ଗ. ଏବେ ବନ ଅଚ୍ଛେଦ ଯେଣୁ ଲୋଡ଼ିଲ
୪ । ଘ. ଧାତା ଦେଲେ ସେ
୫ । ଘ. କର ଯୋଡ଼ି ବୋଲନ୍ତି
୬ । ଖ ଗ. ତପସ
୭ । ଖ ଘ. ବନେ ବାସ
୮ । ଖ ଘ. ସଙ୍ଗରେ ମୃତନ
୯ । କ. ଲୀଳା
୧୦ । ଘ ପୁଣି ତୁମ୍ଭ ମୁଖୁ ହରିଲି
୧୧ । କ. ମୋହରି ସଙ୍ଗେ
ଘ. ମୋହର ସଙ୍ଗେ

ଏବେ ତ ଅଜ୍ଞାତ[1] ବାସେ ରହିବ ବରଷେ ତେରହନ ମୁଁ ବଞ୍ଚିବ
ପୁଣି ଅଭିଷେକ[2] ହୋଇବ କାଳେ ଆସିବା ହେବେ ସର୍ବ ତପସୀଲେ[3] ହେ
ଏବେ ଚଳ ନିଜ ସ୍ଥାନ[4] ସେ
ଭାଇ ଭଣଜା ଧରି ସର୍ବ ଚରଣେ ପଡ଼ିଲେ ଧର୍ମନନ୍ଦନ ସେ[5] ॥୭॥

କଲ୍ୟାଣ କରି ସର୍ବ ତପିଜନ[6] ସେ ଯାହା ମତେ ଗଲେକ ବହନ[7]
ତହୁଁ ପାଣ୍ଡବେ ସେଠୁଁ[8] ବନେ ପଶି ଶୀଘ୍ରେ ବ୍ୟାସେ ମିଳିଲେକ ଆସି ହେ
ପାଣ୍ଡବେ ଘେନ ଦ୍ରୌପଦୀ[9] ସେ
ବେଦବ୍ୟାସଙ୍କର ଚରଣ ତଳରେ[10] ପଡ଼ିଲେ ଯାଇ ତତ୍କ୍ଷଣ ସେ ॥୮॥

ଆସନ ଦେଇ ବ୍ୟାସଙ୍କୁ ବସାଇ ବସିଲେ ପାଣ୍ଡବେ ହରଷ ହୋଇ
ଯୁଧିଷ୍ଠି କୃଷ୍ଣଙ୍କୁ କଲେଟି[11] ଲସ୍ତେ ଶ୍ରୀକୃଷ୍ଣ ତାହା ଜାଣି ଦ୍ୱାରିକାପୁରେ ସେ
ହସ୍ତି ରଥ ଆରୋହିଲେ ସେ
ହସ ହସ[12] ହୋଇ ବଳେଦ ବନରେ ଉଭରେ[13] ପ୍ରବେଶ ହେଲେ ସେ ॥୯॥

ଯୁଧିଷ୍ଠି ପାଦେ କଲେ ଦରଶନ[14] ବସିଲେ ଯାଇ ଜଗତ ଜୀବନ[15]
ଚାରି ପାଣ୍ଡବେ ଉଚ୍ଚେଣ ଉଭରେ[16] ଶ୍ରୀକୃଷ୍ଣ ପାଦେ ପୂଜଣ ଉଭରେ[17] ସେ
ବସିଲେ ସମେଳ[18] ହୋଇ ସେ
ଯୁଧିଷ୍ଠି ବୋଲନ୍ତି[19] ବନବାସ ଶେଷ ହୋଇଲା କମଳା ସାଇଁ ହେ ॥୧୦॥

---

୧ । ଘ. ଏବେ ନେ ଅଜ୍ଞାତ
୨ । ପୁଣ ଅଭିଷେକ
୩ । ଗ. ତପିସିଲେ
୪ । ଖ. ଥାନ
ଗ. ସ୍ଥାନ
୫ । ଖ. ଜାଣି ଗମନ ସେ
ଗ. ସର୍ବ ଘେନ ଚରଣେ ପଡ଼ିଲେ ଯାଇ ବନ୍ଦନ
ଘ. ଭଣଯା ଘେନି······ ଯାଇଁ ଗମନ ସେ
୬ । ଖ. କଲେ ସର୍ବ ତପିଗଣ
ଗ. କରି ସର୍ବ ତପିଜନ
ଘ. କରି ସର୍ବ ତପିଗଣ
୭ । ଖ ଘ. ଗଲେ ତତକ୍ଷଣ
୮ । ଖ ଗ. ସେହି
୯ । ଗ. ପାଣ୍ଡବ ଘେନ ଦ୍ରୋପଦ
ଘ. ଦ୍ରୁପଦ ଘେ
୧୦ । ଖ ଘ. ଚରଣେ ସହୁରେ
୧୧ । ଖ ଗ ଘ. ନମସ୍ତେ
୧୨ । ଖ. ସହରସ
ଗ. ସେ ହରସ
ଘ. ସହର ହୋଇ ସେ
୧୩ । ଖ ଗ ଘ. ଗୁରିତେ
୧୪ । ଖ ଘ. କରଲ୍ପୀ ଦର୍ଶନ
୧୫ । ଖ ଘ. ଜଗତ ମୋହନ
୧୬ । ଖ ଗ. ହୃଠୀଣ ଗୁରିତ
ଘ. ହୃଠୀଣ ଗୁରିତେ
୧୭ । ଘ. ହୃସତେସେ
୧୮ । ଗ. ସୁମେଳ
୧୯ । ଖ ଗ ଘ. କଣାନ୍ତି

ତାହ୍ନି[୧] ଆମ୍ଭେମାନେ ହେବୁ ଗୋପ୍ୟାନ                    ଭୀମସେନର ତ ଜାଣ ଭୋଜନ
ଶସ୍ତ୍ରମାନ ନେଇ[୨] ତାହ୍ନି[୩] ରଖିବୁ                କହି ପ୍ରକାରେ ଆମ୍ଭେ ଧନ ନେବୁ ସେ
ଶୁଣି କହନ୍ତି ଶ୍ରୀଧର ଯେ
ଏହା ଜାଣି ଆମ୍ଭେ[୪] ଝୋଷ୍ଟ ବନ[୫] ମଧ୍ୟେ ଶମୀ[୬] ବୃକ୍ଷ ଅଛୁ କରି ଯେ[୭] ॥୧୧॥
ଋଲ ସେଠାକୁ ସର୍ବେ ଯିବା ଚଳ                          ଆପଣ[୮] ଆଗ ହେଲେ ବନମାଳୀ
ପାଣ୍ଡବେ ଦ୍ରୌପଦୀ ବ୍ୟାସ[୯] ସଙ୍ଗତେ            ଝୋଷ୍ଟ ବନରେ ମିଳିଲେ ଭରତ ସେ[୧୦]
ଶମୀ[୧୧] ବୃକ୍ଷକୁ ଦେଖିଲେ ଯେ
ଅଧେ ଧବଳ ଅଧେକ[୧୧] ଅଟେ ନୀଳ ସେ ହରହର ହୋଇଲେ ସେ ॥୧୨॥
ପାଞ୍ଚ ଶାଖାଟି ସାକ୍ଷାତେ[୧୨] ପାଣ୍ଡବେ            ସେ ତରୁ ଝୋଟ ଦ୍ରୌପଦୀ ସ୍ୱଙ୍ଗବେ[୧୩]
କୋଣେ କୋଣେ ପଞ୍ଚ ଡାଳ[୧୪] ବସ୍ତାର            ତହିଁର ଝୋଟ ଅତ୍ୟନ୍ତ[୧୫] ଗମ୍ଭୀର ସେ
ଦଶ ଯୋଜନ[୧୬] ତା ଉଚ୍ଚ ଯେ
ବୃହିଁଲେ ଊର୍ଦ୍ଧ୍ୱ ଆକାଶ ପ୍ରାଏ ପ୍ରତେ ଅତ୍ୟନ୍ତ ନବଡ଼ ସଞ୍ଚ ଯେ ॥୧୩॥
ଦେଖି ପାଣ୍ଡବେ ହୋଇଲେ ଭ୍ରମିତ                          କୃଷ୍ଣ ବୋଲନ୍ତି ଶୁଣ ଧର୍ମସୁତ
ଏ ଝୋଟେ ସହସ୍ର ରଖିବା ନେଇ[୧୭]            ତହିଁକେ ଚଢ଼ିବ[୧୮] ଯୁଧିଷ୍ଠି କହ ସେ
କୃଷ୍ଣ ବୋଲେ ବୃକ୍ଷ ମୂଳ ଯେ[୨୦]
ଚତକ୍ଷଣେ ଯାଇ ଶିଖରେ ହୋଇବ ଚକ୍ଷୁ ବୁଜ କଲେ କୋଳ ଯେ ॥୧୪॥

---

୧ । ଙ. ସହସ୍ରମାନ ତୋ
ଗ. ସହସ୍ରମାନ
ଘ. ସହସ୍ର ମାନ
୨-୩ । ଗ ଘ: ଭାହିଁରେ
୩ । ଗ ଙ. ମୁହିଁ
୪ । ଖ: ଶମିବୃକ୍ଷ
ଘ. ଧାର୍ମିବୃକ୍ଷ
୫ । ଘ. ଝୋଷବନ
୬ । ଗ. ଚଷ୍ଟି
ଙ. ଅଛୁ କରି ଯେ
୭ । ଗ. ଆପଣେ
୮ । ଘ. ଦ୍ରୁପଜା ବ୍ୟାସ
୯ । ଖ. ତୁରିତେ
ଗ. ସମସ୍ତେ
୧୦ । ଖ. ଶମି
ଘ. ସମି
୧୧ । ଗ. 'ଅଧେକ' ପାଠ ନାହିଁ
୧୨ । ଙ. ପଞ୍ଚଶାଖା ସେ ପଞ୍ଚ
ଘ. ପଞ୍ଚଶାଖାଟି ସେ ପଞ୍ଚ
୧୩ । ଘ. ଦ୍ରୁପଦୀ ସ୍ୱଭାବେ
୧୪ । ଗ. ଷ୍ଟ୍ରଗିଡ଼ାଳ
୧୫ । ଗ. ସ୍କନ୍ଧବେ
୧୬ । ଖ ଗ ଙ. ଯୋଜନ ସେ
୧୭ । ଖ ଘ. ଘଷ
୧୮ । ଖ ଘ. ଶସ୍ତ୍ରଅସ୍ତ୍ରମାନ ସହିତ ଏହି ସେ
ଏ ଝୋଟ ଅଢ ଉପର ହେ
ଶସ୍ତ୍ରମାନ ଏଥି ଗୋପ୍ୟ ରହିଥିବ କେବଳ ନୋହେ ଗୋଚର ହେ
ଅଙ୍କେ ଗଲେ ନେବ ଧନୁଶର ତେବେ ଯେ ବୃକ୍ଷ ହୋଇବ ଅନ୍ତର
ସକଳ ଶସ୍ତ୍ର ଏବେ ରଖ ତହିଁ      (ଅଧିକ)
୧୯ । ଖ ଙ. ଚଢ଼ିବ
୨୦ । ଘ. ଚକ୍ଷୁ ମୂଳ ହେ

ସୁଧର୍ମି ଅର୍ଜୁନଙ୍କ ଆଜ୍ଞା[1] ପେଲେ ସେହି ପ୍ରକାରେ ସେ ବୃକ୍ଷେ ଉଠିଲେ
ସ୍ଥାମ ତଳରୁ ଉଥନ୍ତ ବଢ଼ାଇ ଦଶ କୋଣ ପାଞ୍ଚ ଧନୁକୁ ଦେଇ[2] ସେ
ବେନ ଗଦା କୃନ୍ତ[3] ପେଲେ ଯେ
ତରୁ[4] କୋଟରେ ଅର୍ଜୁନ ସବୁ ରଖି ଲେଉଟି ପୁଣ ଆଇଲେ ଯେ ॥୧୫॥

ସୁଧର୍ମି ବୋଇଲେ[5] ଶୁଣ ହେ ହରି କେ ଅବା ଶସ୍ତ୍ର ଏଥୁ ନେବ ହରି[6]
ଅର୍ଜୁନ ବୋଲନ୍ତି ଅଛି[7] ଉପାଏ ଶସ୍ତ୍ର ଜଗିବାକୁ ନଥିବ ଭଏ[8] ସେ
ଶତେ କରନ୍ତ ସ୍ମରଣ ଯେ
ପ୍ରଚଣ୍ଡ ବଳ ଅର୍ଜୁନର ଗ୍ରୁମ୍ମରେ[10] ପରବେଶ ତତକ୍ଷଣ ଯେ ॥୧୬॥

ଅର୍ଜୁନ ବୋଲନ୍ତି ଶୁଣ ହେ ବୀର ଶସ୍ତ୍ର ଅଛି ଶମୀ ବୃକ୍ଷ କୋଟର
କବନ୍ଧ ରୂପେ ଡ଼ାଳେ ଲଗିଥିବ[11] ପରଲୋକ ଦେଖି ରଣ୍ଡଏ ଦେବୁ[12] ସେ
ପ୍ରଚଣ୍ଡ ବଳ ହରଷ ଯେ
ଅତି ଅଦଭୂତ ସେ ବୃକ୍ଷ ଡାଳରେ କବନ୍ଧ ରୂପେ[13] ପ୍ରକାଶ ଯେ ॥୧୭॥

ଅତି ଘର୍ଦ୍ଧ[14] ଜଣ ଦେଉଛି ରଣ୍ଡ ଶୁଣି ସୁଧର୍ମି ମୋହେ ଗଲେ ପଣ୍ଡ
ଅର୍ଜୁନ କହେ ନକର[15] ଶବଦ ଶୁଣି କବନ୍ଧ ହେଲା ନିଶବଦ ସେ
ସୁଧର୍ମି ଚେତା ପାଇଲେ[16] ଯେ
ତାର ଥିଲେ ଶସ୍ତ୍ର କେହୁ ନେଇପାରେ ବୋଲିଣ ପ୍ରଶଂସା କଲେ ଯେ ॥୧୮॥

---

୧ । ଘ. ଆଜ୍ଞା
୨ । ଘ. ପାଞ୍ଚଧନୁ ଦଶ କୋଣକୁ ଦେଇ ସେ
୩ । ଖ. କୋନ୍ତ
୪ । ଖ. ବୃକ୍ଷ
୫ । ଗ ଘ. ବୋଲନ୍ତି
୬ । ଗ. ଏଥୁ ସବୁ ନେମାଭ ହରି
ଘ. ଶସ୍ତ୍ରମାନ କେବା ନଅଇ ହରି
୭ । ଗ. ପୁଣ
୮ । ଖ. ଜଗିଥିବ
୯ । ଗ. ଅଛୁ ଉପାୟେ
୧୦ । ଘ. ଅର୍ଜୁନଙ୍କ ଗ୍ରୁମ୍ମରେ
୧୧ । ଗ. କୋବନ୍ଧ ରୂପେ ବୃକ୍ଷ ଥିବୁ ଲଗି
ଘ. ଲଗିଥିବ
୧୨ । ଗ. ଭ୍ରଣ୍ଡବ ରଣ୍ଡ
ଘ. ରଣ୍ଡଏ ଦେବ ସେ
୧୩ । ଖ. ଅଦଭୂତୀ ବନ୍ଧନେ ଡ଼ାଳରେ
ଲଗିଲେ କବନ୍ଧ ରୂପ
ଗ. ଅଦଭୁତ ଅବନ୍ଧନରେ ସେ ଡ଼ାଳେ
ବନ୍ଧନ ରୂପ
ଘ. ଅଦଭୂତୀରେ ବନ୍ଧନ ଡ଼ାଳେ ଲାଗିଲେ
କବନ୍ଧ ରୂପ
୧୪ । ଗ. ଘର୍ଦ୍ଧ
ଘ. ଘୃଧ
୧୫ । ଘ. ଡ଼ାକେ ନ କର
୧୬ । ଘ. ସୁଧର୍ମୀ ଚେତନା ପାଇ ସେ

ଯୁଧିଷ୍ଠିଙ୍କି କହନ୍ତି ପୀତବାସ ଏଠାରୁ ସାତ କୋଶ ମିତ୍ର ଦେଶ[1]
ବିରାଟ ନାମେ ତହିଁର ରାଜନ ସେ ନଗରେ ତୁମ୍ଭେ ହୋଇବ ଗୋପ୍ୟାନ ସେ
ଆନ ଆନ ନାମ ବହି ସେ
ବ୍ୟାସେ ଦ୍ରୌପଦୀଙ୍କି ଏକାନ୍ତେ କହିଲେ[2] ରହିବ ଶ୍ରୀକୃଷ୍ଣ ତହିଁ[3] ସେ ॥୧୯॥

କହିଣ ବ୍ୟାସେ ଅନ୍ତର ହୋଇଲେ ଶ୍ରୀକୃଷ୍ଣ ତାଙ୍କୁ ବହୁ ପ୍ରବୋଧିଲେ
ଯୁଧିଷ୍ଠି ପାଦେ ଦରଶନ କରି ମେଲାଣି ତହୁଁ[4] ହୋଇଲେକ ହରି ସେ
ଖଗେଶ୍ୱରେ ବିଜେ କଲେ ସେ
ସ୍ମରି ପାଣ୍ଡବଙ୍କୁ କଲ୍ୟାଣ କରିଣ ଦ୍ୱାରକା ପୁରେ ଚଳିଲେ ସେ[5] ॥୨୦॥

ଶମୀ ବୃକ୍ଷ ତଳେ[6] ପଞ୍ଚ ପାଣ୍ଡବେ ଦ୍ରୌପଦୀଙ୍କି[7] ସେନ ଆନନ୍ଦ ଭାବେ
ବସିଣ ତହିଁ[8] କରନ୍ତି ବିଚାର ଶ୍ରୀକୃଷ୍ଣ ପାଦ ଚିନ୍ତ ନିରନ୍ତର ସେ
ଦୀନ ବିଶ୍ୱମ୍ଭର ଦାସ ସେ
ଅଭୟ ଶ୍ରୀପଦ୍ମପାଦେ[9] ଭରସାରେ ବନ ପର୍ବ କଲି[10] ଶେଷ ସେ ॥୨୧॥

---

୧ । ଖ ଗ ଘ. ମତ୍ସଦେଶ
୨ । ଗ କହନ୍ତି
ଘ. ଦ୍ରୁପଦୀଙ୍କ ଏକାନ୍ତେ କହନ୍ତି
୩ । ଗ. ତଥ
୪ । ଗ. ତହିଁ
୫ । ଖ ଗ ଘ. ମେଲିକଲେ
୬ । ଙ, ଶମୀବୃକ୍ଷମୂଳେ
ଘ. ଶମୀବୃକ୍ଷ ତଳେ
୭ । ଘ. ଦ୍ରୁପଦୀଙ୍କି
୮ । ଘ. ବସିଣ ତହୁଁ
୯ । ଚ. ପାଦପଦ୍ମ
ଘ. ଅଭୟ ପାଦପଦ୍ମ
୧୦ । ଖ. ହେଲା
ଘ. ଏ ବନ ପର୍ବ ହେଲା

# ଈଶାଠ ପର୍ବ

## ପ୍ରଥମ ଛାନ୍ଦ

ରାଗ—ଚକ୍ରକେଳି

ଶ୍ରୀ ଗଣେଶାୟ ନମଃ[1]

ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା
ଆଦୌ ଚାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ॥୧॥

ଜୟ ଜୟ ବୃଷଭାନୁ ନନ୍ଦନୀ
ଜୟ ନାଗ ସୁର ନରଙ୍କ ବନ୍ଦନୀ ॥୧॥

ଜୟ ଜୟ ନିକୁଞ୍ଜ ବିନୋଦିନୀ
ଜୟ ଜୟ ଶ୍ରୀକୃଷ୍ଣ ଆହ୍ଲାଦିନୀ[4] ॥୨॥

ଜୟ ରାସ ଉଲ୍ଲାସ ବିଳାସିନୀ[5]
ଜୟ ବେଣୁଧର ଧୀର ନାଶିନୀ[6] ॥୩॥

ଜୟ ଜୟ ସ୍ଵଚ୍ଛ ନୀର ବାସିନୀ[7]
ଜୟ ଜୟ ଘନସାର ହାସିନୀ[8] ॥୪॥

ଜୟ ଜୟ ସରସିଜ ଲୋଚନୀ[9]
ଜୟ ଜୟ ଭବଭୟ ମୋଚନୀ ॥୫॥

---

୧ । ଖ ଗ. ପାଠ ଶ୍ରୀଃଦସ୍ତ
ଘ. ଶ୍ରୀ ଗଣେଶାୟ ନମଃ ଅବସ୍ଥ ମନ୍ତ୍ର
୨ । ଖ ଗ ଘ. ଶ୍ଳୋକଟି ନାହିଁ
୩ । ଗ ଘ. ନାଗନର ସୁର
୪ । ଘ. ଆହ୍ଲାଦନ
୫ । କ. ବିଳାସେନ
ଗ. ବିଳାସିନ
ଘ. ପ୍ରସନ୍ନ ନାସ ବିଳାସିନ
୬ । କ. ନାସେନୀ
ଖ ଗ. ନାଶିନ
ଘ. ନାଶନ
୭ । ଖ. ନୀଳ ବାସିନ
ଗ ନୀଳଗର୍ଭ ବାସିନ
ଘ. ନୀଳ ବାସନ
୮ । ଖ. ପୋଥିରେ ପାଠ ନାହିଁ
ଘ. ହାସନ
୯ । ଖ. ପୋଥିରେ ପାଠ ନାହିଁ

ତୁମ୍ଭ ଚରଣେ ପେଶୁ[1] ମୋର ମନ
ଏଣୁ ଦୟା କରିବେ ଭଗବାନ[2] ॥୬॥
ତୁମ୍ଭେ ସାରଦା ରୂପେ କଣ୍ଠେ[3] ବସ
ଏହୁ ବିରାଟ ପର୍ବ ପ୍ରକାଶ ॥୭॥
ଲେଖିବାର ସିନା ମୋର ଆସ୍ପୃତ
ଏତ ଅଗାଧ ଚରିତ ପର୍ବତ[4] ॥୮॥
ସାଧୁଜନେ ଶରଧାରେ ଶୁଣିମେ
କୃଷ୍ଣ ଚରିତ ହୃଦରେ[5] ଗୁଣିମେ ॥୯॥
କୃଷ୍ଣ ପ୍ରସଙ୍ଗ ହରଷ[6] ଚିତ୍ତରେ[7]
ମୋର ଦୋଷ ନ ଧରିବେ ଗୀତରେ ॥୧୦॥
ବନବାସ ଅନ୍ତେ ପଞ୍ଚ ପାଣ୍ଡବେ
ବିରାଟ ନଗ୍ରେ ଅଗ୍ୟାଂତ ବଞ୍ଚିବେ[9] ॥୧୧॥
ତହିଂ ମହାରସ[10] ଲୀଳା ହୋଇବ
ତାହା କାହା ପକ୍ଷ ଲେଖି ପାରିବ[11] ॥୧୨॥
ଏହା ବିଚାରି ଦୟାକର ମୋତେ
ତୁମ୍ଭ ବିନୁ ଭରସା ନାହିଁ ଚିତ୍ତେ[12] ॥୧୩॥
ରାଧାକୃଷ୍ଣ ଚରଣେ ନମସ୍କାର[13]
ଅତି ପତିତ ହୀନ[14] ବିଶ୍ୱମ୍ଭର ॥୧୪॥
ଶୁଣ ସାଧୁଜନେ ତୋଷ ମନରେ[15]
ପଞ୍ଚ ପାଣ୍ଡବେ ହେ ଝୋଞ୍ଚ ବନରେ ॥୧୫॥

---

୧ । କ ଗ ଘ. ରଖ
୨ । ଗ ନ କରେ ଭଗବାନ
୩ । କ. କଣ୍ଠେ
ଖ. ମୋର କଣ୍ଠେ
୪ । ଖ. ପର୍ବତ ଚରିତ
୫ । ଗ. ମୁଖରେ
ଙ. ହୃଦଏ
ଘ. ମନରେ
୬ । ଙ. ପ୍ରସଙ୍ଗେ ହରଷ
ଘ. ଚରିତ ହରଷ
୭ । ଘ. ମନରେ
୮ । ଘ. ନ ଧରିବ ଚିତ୍ତରେ
୯ । ଗ. ଦେହ ଅଜ୍ଞାତେ ବଞ୍ଚିବ
୧୦ । ଙ. ମାହାରସ
୧୧ । ଖ. କାହାର ସକ୍ୟରେ ଲେଖିବ
ଗ ଘ. ପକ୍ଷେ ଲେଖି ପାରିବ
୧୨ । ଘ. ତୁମ୍ଭ ଭରସା ବିନୁ ନାହିଂ ଚିତ୍ତେ
୧୩ । ଖ. ଚରଣ ସିରେ ମୋର
୧୪ । କ ଘ. ଦନ
୧୫ । ଘ. ମନ ତୋଷରେ

ସଙ୍ଗେ ଦ୍ରୋପଦ ନନ୍ଦନୀ ଅଛନ୍ତି
ଶମି ବୃକ୍ଷମୂଳେ ବସି[1] ଗଲନ୍ତି ॥୧୬॥
ସ୍ୱରସ୍ୱତୀଙ୍କି ସ୍ତୁତି ଧର୍ମସୁତ[2]
ଦ୍ରୋପଦୀ[3] ଆଦି ଶୁଣ ମୋ[4] ଭାରତ ॥୧୭॥
ଯାହା ଶ୍ରୀକୃଷ୍ଣ ଚନ୍ଦ୍ର ଗଲେ କହି
ଗୋପ୍ୟେ ବିରାଟ ନଗ୍ରେ ଥାଅ ରହି ॥୧୮॥
ବରଷେ ଚେରବନ କେହିଁ ରୂପେ[5]
ଚକ୍ଷୁଂ ଅଗୋଂଚର ବଞ୍ଚିବା ସ୍ୱରୂପେ[6] ॥୧୯॥
କେହ୍ନ ଜାଣନ୍ତା ଚକ୍ଷୁରେ ନୋହିବ
କହ କେ ଚକ୍ଷୁଁ କ ରୂପେ[7] ରହିବ ॥୨୦॥
କର ଯୋଡ଼ି ଜଣାନ୍ତି ବୃକୋଦର
ଦେବ ମୁର୍ତ୍ତି ହୋଇବି[8] ସୂପକାର ॥୨୧॥
ମୋତେ ବ୍ରହ୍ମା ପ୍ରସନ୍ନ ହୋଇଲେ[9]
ନଡ ପ୍ରସ୍ତରେ ରନ୍ଧନ[10] କହିଲେ ॥୨୨॥
ନଳ ଗଉଷ ସଞ୍ଜଷ ନି ବଧି
ମୋର ପାକରେ ଅମୃତ ପ୍ରସିଦ୍ଧି ॥୨୩॥
ମୋର ନାମ ସେ[11] ବଲଭ ହୋଇବ
ବସ୍ତୁ[12] ମାୟାରେ କେହ୍ନ ନ ଚିହ୍ନିବ ॥୨୪॥

---

୧। ଗ ଘ. ବୃକ୍ଷତଳେ ବସି
୨। ଗ. ସ୍ତୁତି ଧର୍ମସୁତ
୩। କ ଙ. ଦ୍ରୁପଦୀ
ଘ. ଦ୍ରୋପଦ
୪। ଗ. ମୋ ବଚନ
ଘ. ମୋ ହୃଦନ୍ତ
୫। କ ଘ. କହିରୂପେ
ଖ. କଭିରୂପେ
୬। କ ବଞ୍ଚିବ ସ୍ୱରୂପରେ
୭। କ. କେ ରୂପେ
୮। ଗ ଘ. ମୁର୍ତ୍ତିଂ ହୋଇବ ଚିହ୍ନି
୯। ଘ. ପ୍ରସନ୍ନ ହୋଇଲେ
୧୦। ଖ. ପ୍ରତ ରନ୍ଧଣା ସେ
ଗ ଘ. ପ୍ରତ ରନ୍ଧନ ସେ
୧୧। କ. ମୋର ନାମ
ଙ. ମୋହୋର ନାମ
୧୨। ଙ. ଦେଶ

ପୁଣ ଅର୍ଜୁନ ତହିଁ ଜଣାଇଲେ
ମୋତେ ଉର୍ବଶୀ ପୂର୍ବେ ଶାପ[1] ଦେଲେ ॥୨୫॥
ଏଣୁ ନପୁଂସକ ମୁଂ ସେ ହୋଇବି[2]
ସ୍ତ୍ରୀର[3] ବେଶରେ ଜଗତ ମୋହିବି ॥୨୬॥
ଉତ୍ତରା ନାମେ ବିରାଟର ସୁତା[4]
ତାକୁ ଶିଖାଇବି ନୃତ୍ୟ ସଙ୍ଗୀତ[5] ॥୨୭॥
ନାଟ ମନ୍ଦିରେ ଥିବି ମୁଁ ହରଷେ
ମୋର ନାମ ବୃହନ୍ନଳା[6] ପ୍ରକାଶେ ॥୨୮॥
ପୁଣ ଜଣାଇଲେ ତହିଁ ଦ୍ରୋପଦୀ[7]
ମୋତେ କହି ଅଛନ୍ତି ବ୍ୟାସ ଯତି[8] ॥୨୯॥
ମୁହିଁ ବିରାଟ ଅନ୍ତପୁରେ ଥିବି
ଶ୍ରୀକୃଷ୍ଣାଙ୍କୁ ବେଶ[9] ଲଗି କରିବି ॥୩୦॥
ସୈରନ୍ଧ୍ରୀ ନାମ ମୋହର[10] ହୋଇବ
ରାଣୀ ସଦୟା ମୋତେ କରିଥିବ ॥୩୧॥
ପୁଣ ଜଣାଇଲେ ତହିଁ ନକୁଳ
ହେବି ମୁହିଁ ହୋଇବି ବାଜପାଳ[11] ॥୩୨॥

---

୧ । ଖ. ତହିଁ ଶାପ
ଗ. ପୂର୍ବେ ଭୂପ
ଘ. ପୂର୍ବେ ଶାପୀ
୨ । କ ଘ. ନପୁଂସକ ମୁହିଁ ହୋଇବି
ଗ. ନପୁଂସକ ମୁହିଂ ହୋଇବି
ଘ. ନପୁସକ ମୁହିଂ ହୋଇବି
୩ । ଖ. ନାରୀ
୪ । କ ଗ. ସୁତ
୫ । କ-ଗ ସଙ୍ଗିତ
୬ । କ ବୃହନ୍ନଳ
ଖ. ବୃହନ୍ନାରୀ
ଗ. ବୃହନଲା
୭ । କ. ଦ୍ରୋପଦୀ
ଘ. ବୋଲନ୍ତି ତହିଁରେ ଦ୍ରୋପଦୀ
୮ । ଗ. ମୋତେ କହିଣ ଗଲେ ବ୍ୟାସଜତୀ
୯ । କ ଖ. ଶ୍ରୀକୃଷ୍ଣଙ୍କୁ ବେଶ
୧୦ । କ ଘ. ମୋର
ଖ. ମୋହୋର
୧୧ । ଗ ଘ. ହେବ ହୋଇବି ମୁହିଁ ବାଜପାଳ

ମୋତେ ଅଶ୍ୱିନୀ କୁମାରେ କହିଲେ
ଅଶ୍ୱ ବିଦ୍ୟାମାନ ସ୍ତ୍ରୀ ଶିଖାଇଲେ ॥୩୩॥
ବିରାଟର ଅସାଧ୍ୟ ଅଛି ବାଜି
ତାକୁ ଦେଖନ୍ତେ ମୁଁ କରିବି[୧] ସଜ ॥୩୪॥
ମୋତେ ବିରାଟ ପ୍ରସନ୍ନ ହୋଇବ
ଗ୍ରନ୍ଥୀକ ନାମ ମୋର[୨] ବୋଲାଇବ ॥୩୫॥
ପୁଣ ଜଣାନ୍ତି ଉଠି[୩] ସହଦେବ
ମୋତେ ପ୍ରସନ୍ନ ହେଲେ ବାସୁଦେବ ॥୩୬॥
ଗୋକୁଳ ବିଦ୍ୟା ମୋତେ ଶିଖାଇଲେ
ପୁଣ ମୋହନ ବଂଶୀ[୪] ଗୋଟି ଦେଲେ ॥୩୭॥
ପୃଥୁନା[୫] ନାମେ ବିରାଟର ଗାବ
ଅସାଧ୍ୟ ସେ ମୋତେ[୬] ସାଧ୍ୟ ହୋଇବ ॥୩୮॥
ମୋତେ ଗୋମାତା ହୋଇବେ ପ୍ରସନ୍ନ[୭]
ଗୋରୁ ସେବାରେ ମୋର ଯିବ ଦିନ ॥୩୯॥
ଦିବ୍ୟ ରୂପେ[୮] ମୁଂ ହୋଇବି ଗୋପାଳ
ମୋର ନାମ ହୋଇବ ତନ୍ତ୍ରିପାଳ[୯] ॥୪୦॥
ଶୁଣି ସନ୍ତୋଷ ଧର୍ମଙ୍କ ନନ୍ଦନ
ପୁଣ ଜଣାଇଲେ ସେ ଭୀମସେନ ॥୪୧॥
ତୁମ୍ଭେ କେମନ୍ତ ପ୍ରକାରେ ରହିବ[୧୦]
ସତ କହିଲେଟି[୧୧] ଜଣା ହୋଇବ ॥୪୨॥
ଶୁଣି କହନ୍ତି ଦେବ ଧର୍ମରାଜ
ଆମ୍ଭେ ହୋଇବୁଂ ସଭାପଣ୍ଡା ଦ୍ୱିଜ[୧୨] ॥୪୩॥

---

୧ । କ ଖ. ଦେଖିଲେ ମୁହିଂ କରିବି
ଘ. ଦେଖନ୍ତେ କରିବ ମୁଁ
୨ । କ. ତୋର ନାମ
୩ । ଖ. ଜଣାଏ
ଘ. ପୁଣି ଜଣାନ୍ତି
୪ । କ ଗ. ମୋହନ ବସିଂ
୫ । କ ଖ. ପ୍ରୋଥନା
୬ । କ ଗ. ଅସାଧ୍ୟେ ସେ ମୋର
୭ । ଗ ହୋଇବ ପ୍ରସନ
ଘ. ଗୋମାତ ହୋଇବ ପ୍ରସନ
୮ । ଖ. ଦିବ୍ୟ ରୂପ
୯ । ଗ. ତନ୍ତ୍ରିପାଳ
ଘ. ତନ୍ତିପାଳ
୧୦ । ଗ. କେଉଁ ପ୍ରକାରେ ଆପଣ ରହିବ
୧୧ । ଗ ଘ. ସତ କହିଲେଟି
୧୨ । ଘ. ଦ୍ୱିଜ

କୁନ୍ତୀ[୧] ଜନନୀ ଅଟନ୍ତି ଆମ୍ଭର
　　　　କୁନ୍ତଭଟ ହୋଇବ ନାମ ମୋର[୨] ॥୪୩॥
ସଭାପଣ୍ଡା ହୋଇଣ ବସିଥିବୁଂ
　　　　ଚବାଟର ସଙ୍ଗେ ପଶା ଖେଳିବୁଂ ॥୪୪॥
ଭୀମସେନ ବୋଲନ୍ତି ହେ[୩] ଅର୍ଜୁନ
　　　　ଶୁଣ ଏବେ ବାହୁଣ୍ଡି[୪] ଯିବା ବନ ॥୪୫॥
ଦୁର୍ଯ୍ୟୋଧନ[୫] ସଙ୍ଗେ ପଶା ଖେଳିଲେ
　　　　ଭାଇ ଭାରିଯା ସମେତ[୬] ହାରିଲେ ॥୪୬॥
ରାଜ ବିଭୂତି ଛାଡ଼ିଣ ବନରେ
　　　　ଏବେ ପଶା ପଡ଼ନ୍ତିଣି ମନରେ ॥୪୭॥
ଧର୍ମନନ୍ଦନ ବୋଲେ ଏ[୭] ନୃପଇ
　　　　ଧୀର ହୋଇ ଶୁଣ ଯାହା[୮] କହଇ ॥୪୯॥
ଶକୁନିର କପଟ ସିନା ପଶା
　　　　ତହିଁ ବୁଡ଼ିଲା ଆମ୍ଭର ଭରସା ॥୫୦॥
ଧର୍ମ ପଶା ଚବାଟରେ[୯] ଖେଳିବୁଂ
　　　　ନାନା କଉତୁକେ ଧନ ବଞ୍ଚିବୁ[୧୦] ॥୫୧॥
ତୁମ୍ଭେ ସଭାକୁ ଚଳଭାଇ ଯିବ
　　　　ଆମ୍ଭଙ୍କୁ ତହିଁ ଦ୍ୱିପଦ କରିବ ॥୫୨॥
ତେଣୁ କରି[୧୧] ପ୍ରଥମେ ଯିବୁଂ ଆମ୍ଭେ
　　　　ଜଣେ ଜଣେ ହୋଇଣ ଯିବ ତୁମ୍ଭେ ॥୫୩॥

---

୧ । କ ଭ ଦ. କୋନ୍ତି
୨ । ଖ. ନାମ ହେବ ମୋହୋର
　ଭ. ଭୋନ୍ତଭଟ—ମୋର
　ଘ. କୋନ୍ତଭଟ—ମୋର
୩ । ଭ ଖ. ବୋଲେ ହେ
୪ । ଗ ଘ. ଶୁଣ ବାହୁଡ଼ି ଏବେ
୫ । କ ଘ. ଦୁର୍ଯୋଧନ
　ଖ. ଦର୍ଯୋଧନ
୬ । ଖ ଘ. ସହିତେ
　ଗ. ସଙ୍ଗତେ
୭ । ଖ ଗ. ବୋଧିଲେ
୮ । ଖ. ତାହା
୯ । ଖ. ହେତୁ ପଶା ବସିଟେ
୧୦ । ଖ ଭ ଘ. ହରିବୁଂ
୧୧ । ଗ. ଏଣୁକରି

ଏତେ କହିଣ ଦେବ ଧର୍ମଶିଷ[1]
ଆଗେ ହୋଇଲେ ବିପ୍ରବର ବେଶ ।୫୪।

ପୁଣି ଅର୍ଜୁନ କହନ୍ତି ଉତ୍ତର
ଗୁପତେ ଥିବା ବିରାଟ ନଗର[2] ।୫୫।

ଯୁଧିଷ୍ଠିଙ୍କି ଯେ[3] ଅପମାନ କରିବ
ଦ୍ରୌପଦୀଙ୍କି ଯେ ଭର୍ତ୍ସନା ବୋଲିବ[4] ।୫୬।

ତାଙ୍କୁ ଗୁପତେଣ ନାଶ[6] କରିବା
ଏହି କଥା ଚିତ୍ତରେ ଧରିଥିବା[7] ।୫୭।

ଏହୁ ସତ୍ୟ ସତ୍ୟ ଆମ୍ଭ[8] ନିୟମ
ଏଥି ସାକ୍ଷୀ ପୁରୁଷଙ୍କ ଉତ୍ତମ[9] ।୫୮।

ଏହି ବଚନର ସର୍ବେ ସିଦ୍ଧ[10] କଲେ
ଶୁଣି ଯୁଧିଷ୍ଠି[11] ସନ୍ତୋଷ ହୋଇଲେ ।୫୯।

ଧର୍ମ ନନ୍ଦନ ପଦେ[12] ନମସ୍କାର
କହେ ଅଧମ ଦୀନ ବିଶ୍ୱମ୍ଭର[13] ।୬୦।

---

୧। ଖ. ସିଦ୍ଧ
୨। ଘ. ଗୁପତେଣ
୩। ଖ. ପାଠ କାଟଦିଷ୍ଟ
୪। କ. ଯୁଧେଷ୍ଠିଙ୍କି ଜେ
ଘ. ଯୁଧେଷ୍ଠିଙ୍କି ଯେ
୫। କ. ଦ୍ରୋପଦୀଙ୍କୁ ଜେ ଭ୍ରୁଛନା କହିବ
ଗ, ଦ୍ରୁପଦଙ୍କ ଜେ ଭ୍ରୁଛନା ବୋଲିବ
ଘ. ଦ୍ରୋପଦୀଙ୍କି ଯେ ଭ୍ରୁଛନା ବୋଲିବ
୬। କ—ଗ ନାଶ
୭। ଘ. ଏହି କଥା ଚିତ୍ତରେ ଧରିଥିବା
ତାଙ୍କୁ ଗୁପତେଣ ଆମ୍ଭେ ମାରିବା
୮। କ. ଆମ୍ଭ
ଖ. ଏହୁ
୯। ଖ. ଏଥକୁ ସାକ୍ଷ ପୁରୁଷ ଉତମ
ଗ. ଏଥି ସାଖି ପୁରୁଷଙ୍କ ଉତମ
୧୦। ଖ. ସର୍ମସିଦ୍ଧ
୧୧। କ. ଯୁଜେଷ୍ଠି
ଘ. ଯୁଧେଷ୍ଠି
୧୨। ଘ. ପାଦେ
୧୩। କ—ଗ ଧନ ବିଶମ୍ଭର
ଘ. ଦୀନ ବିସ୍ମମ୍ଭର

## ଦ୍ୱିତୀୟ ଛାନ୍ଦ

### ରାଗ—ଭାଟିଆରି

ଶଶୀବଂଶ୍ରୀ ଧର୍ମଦ୍ୱଜ ଯେ,[1]   କପଟେ ହୋଇଲେ ଦ୍ୱିଜ[2]
ଗ୍ରୀଷମ ଋତୁ ମଧ୍ୟାହ୍ନ[3] ରବିପ୍ରାଏ ଦିକାଶୁଛି ତାଙ୍କ[4] ତେଜ ଯେ ॥୧॥

ମାଳ ବସନ[5] ପିନ୍ଧିଲେ ଯେ   ହିକଣ୍ଠ କର ଛନ୍ଦିଲେ
ପୀତ ପଟମ ଅଡ଼ଭଙ୍ଗୀ କଟିଣ ଶ୍ରୀ ଅଙ୍ଗରେ ପକାଇଲେ ଯେ ॥୨॥

ଲମ୍ବିତ[6] ଜୁଡ଼ା ସୁନ୍ଦର ଯେ   ତୁଳସୀଦଳ ମଧ୍ୟର
ଦକ୍ଷିଣ[7] କର ପଲ୍ଲବ ଅନାମିକା ମୁଦ୍ରିକା ଝଳ ରତ୍ନର ଯେ ॥୩॥

କପୋଳରେ ଠିଆ ଶରା ଯେ   କଣ୍ଠେ ଉଭୁର ପଇତା
ବାମକରେ ଟମ୍ବା ପାଣି କୁଣ୍ଡଳ[8] ଦକ୍ଷିଣ କରରେ ଛତା ଯେ ॥୪॥

ଗଳାରେ ରୁଦ୍ରାକ୍ଷ ମାଳ ଯେ   ଚନ୍ଦ୍ରା କଲେ ବନମାଳ[9]
ବିରାଟ ରାଜ୍ୟକୁ ଗମନ କରନ୍ତେ[10] ବେକପାଶେ ନେଇ ଢାଳ[11] ଯେ ॥୫॥

ମତ ଦେଶରେ ମିଳିଲେ ଯେ   ସମସ୍ତେ ନେତ୍ରେ ଦେଖିଲେ
ପ୍ରଶଂସା କରୁ କରୁ ନୃପ ଆସ୍ଥାନେ ପ୍ରବେଶ ଭୂତଳେ ହେଲେ[12] ଯେ ॥୬॥

---

୧ । କ. ଶଶି ଧର୍ମଦ୍ୱଜ ରେ
୨ । ଘ. ଯେ
୩ । ଗ. ମଧ୍ୟାହ୍ନ
   ଘ. ମଧ୍ୟାହ୍ନ
୪ । ଖ. ତେଜୁଛି ତାହାଙ୍କ
   ଗ. ତେଜଅଛି ତାଙ୍କ
୫ । ଗ. କଳ ବସନ
୬ । କ, ଲମ୍ବିତ ଛଟ
   ଖ. ଲମ୍ବିତ ଜାଟା
୭ । ଙ. ଦକ୍ଷିଣ
   ଙ. ଡାହାଣ
୮ । କ ଖ. କୁଣ୍ଡଳ
୯ । ଗ. ଚନ୍ଦ୍ରାକଣ ବନମାଳ
   ଘ. ଚନ୍ଦ୍ରାଙ୍କରେ ବନମାଳି
୧୦ । ଚ, ଗମନ କରନ୍ତି
୧୧ । ଘ. ଟେକ୍ଷ ଢାଳ
୧୨ । କ. ନୃପଅଳେ ଭୂଶତେ ହେଲେ
   ଖ. ନୃପ—ହେଲେ
   ଗ. ନୃପ ଅସ୍ଥାନେ ଭୂଶତେ ପ୍ରବେଶ ହେଲେ ।
   ଘ. ନର୍ପ ଅ[illegible]ନେ—ହେଲେ

ବିରାଟ ବିଜୟ କର ସେ ବହୁଥାଠ ଛନ୍ଦ ପୁର
ପାଟକେଶ୍ୱର ମନ୍ତ୍ରୀକ ସଙ୍ଗେ ସେନ ଗଜମାତରେ[1] ବସ୍ତର ସେ ।୭।

ସୁଧିଷ୍ଟି[2] ଚଳ୍ପି ପ୍ରବେଶ ସେ ଦେଖି ସର୍ବେ କଲେ ହାସ
ନମସ୍କାର କରି ଆସନ[3] ଗ୍ରହଣ ଉଭା ହୋଇଲେ ନରେଶ ସେ ।୮।

କରେ ଧରି ରତ୍ନ ଝାରି[4] ହେ ପାଦ ପ୍ରକ୍ଷାଳନ[5] କରି
କନକ ଆସନେ ବସାଇ ନୃପତି[6] ବହୁ ପୂଜା ତାଙ୍କୁ କରି ହେ ।୯।

କର ଯୋଡ଼ଣ ଜଣାଇଁ ସେ କମା ବିଜୟ ଗୋସାଇଁ
କେଉଁ ଦେଶେ ଘର କ ନାମ ତୁମ୍ଭର କହିବା ହେଉ ବୋଇଲେ ସେ[7] ।୧୦।

ସୁଧିଷ୍ଟି[8] କହନ୍ତ ହସି ସେ ଶୁଣ ହେ ନୃପତି ବଂଶୀ[9]
ପଞ୍ଚକଟକ ଜାଣୁଟିକ ହସ୍ତିନା ଅମ୍ଭେ କୁଞ୍ଜଗଳ[10] ଦେଶୀ ହେ ।୧୧।

ଚହ୍ନି ସୁଧିଷ୍ଟି[11] ନୃପତ ହେ ପଞ୍ଚ ପାଣ୍ଡବ ଦ୍ରୋପଦୀ[12]
ପଶାରେ ହାରିଣ ଅରଣ୍ୟେ ପଶିଲେ ତେଜ ସକଳ ବଭୂତି ହେ ।୧୨।

---

୧ । କ. ଜାଟେକେଶ୍ୱର ମନ୍ତ୍ରୀକ ସଙ୍ଗେ ସେନଗ ସେ
ଖ. ଜାଟକେଶ୍ୱର ମନ୍ତ୍ରୀକ ସେନ ସଙ୍ଗେ ଗଜମାତାକ
ଘ. ପାଟେକେଶ୍ୱର ମନ୍ତ୍ରିକ ସଙ୍ଗେ ସେନ ବିଜୟଠ ସେ

୨ । କ. ଯୁଦ୍ଧିଷ୍ଟି
ଘ. ସୁଧିଷ୍ଟି

୩ । ଖ. ଅସ୍ଥାନ

୪ । ଙ. ଭଙ୍ଗ ଝରି

୫ । କ. ପଖାଳଣ
ଘ. ପଖାଳନ

୬ । କ. ନୃପତି

୭ । ଖ. କହଦେସେ ପୁର କ ନାମ ତୁମ୍ଭଙ୍କ ଗୋସାଇଁ
ଘ. କେଉଁ ଦେସ ପୁର କ ନାମ ତୁମ୍ଭର କହିବା ହୁଅ ବୋଲାଇଁ ହେ

୮ । କ. ଯୁଜେଷ୍ଟି
ଘ. ଯୁଧିଷ୍ଟି

୯ । କ. ବଂଶି

୧୦ । ଖ. କୁନ୍ତିଗନ

୧୧ । କ. ଯୁଜେଷ୍ଟି
ଘ. ଯୁଧିଷ୍ଟି

୧୨ । କ. ଦ୍ରୋପଦୀ
ଘ. ଦ୍ରୁପଦୀ

